ପିଲା ହେଇଥିବାବେଳେ ଷୋଳ ବର୍ଷର ପୁଅ ହେଲାଣି !’

ହୁଁ ହେଁ ଷୋଳ ବର୍ଷର ପୁଅ ହେଲାଣି କି ଛୋଟ ! ବାହାଟିଏ କରି ଦେଲେ ଘରକୁ ବୋହୂଟିଏ ଆସିବ, ନାତି ନାତୁଣୀ ହେବେ ।”

ମୁଁ ସେଇକଥା କହୁଥିଲି କାର୍ତ୍ତିକ । ପଣ୍ଡୁଶାଘରେ ଅନନ୍ତଆ ପୋଡ଼ାମୁହାଁ । ଭଗାର ଶତ୍ରୁ ହେଇ ଅନେଇ ରହିଛି । ମୋ ପୁଅକୁ ନଅ ମୋ ପୁଅକୁ ନଅ ବୋଲି ଲାଗିଛି ଯେ, କ୍ଷେତ୍ର ଗୁଡ଼ାକୁ ଘରେ ପୁରେଇବା କିରେ ? ସେଦିନ ବନାଟା ଆସିଲା । ଷ୍ଟେରମୁହାଁ ଏଇଠିକି ସେଇଠିକି ବୁଲୁ ବୁଲୁ ପୁଙ୍ଗୁରୁ ହେଇ ଗିଲାସ୍‌ଟା ଧରି ପଳେଇଲା ରେ ।”

“କେଉଁ ଗିଲାସଟା ଆଜ୍ଞା ?”

“ମହିଲା ଗିଲାସଟାରେ, ଯୋଉଥିରେ କୋଳ ଅମର ଦୁଧ ପିଉଥାଏ ।”

“ଆପଣ ସେଇଟା ସେଦିନ ଇଷ୍ଟଦେବତାଙ୍କ ପାଖରେ ରଖି ଦେଇଥିଲେ, ମୁଁ ଆଜି ସକାଳେ ଦେଖିଥିଲି ?’

“ହଁରେ ହଁ, ମନେ ପଡ଼ିଲା, ମଙ୍ଗଳବାରେ ପୂଜାକରି ଥୋଇ ଦେଇଥିଲି, ଆଉ ମନେନାହିଁ । ଶୀଘ୍ର ଯା କାର୍ତ୍ତିକ, ପୁରେଇଦେଇଟା ସେ ଘରେ ବସିଛି, ପାଣି ଟିକିଏ କି ପଣାଟା ଦେବୁ ।”

କାର୍ତ୍ତିକ କହିଲା, “ଆଜ୍ଞା ! ଆପଣ ଆସିଲେ ଚିନି ଦେଲେ ସିନା ପଣା ପାଣି ହବ ।”

“ହୋଉ ଚାଲେ, ମୁଁ ଯାଉଛି ।”

କାର୍ତ୍ତିକ ଚାଲିଗଲା ପରେ ଗୋପାଳ ଭିତରକୁ ଆସି ସ୍ତ୍ରୀଙ୍କ ଆଡ଼କୁ ଶଙ୍କିତ ଦୃଷ୍ଟିରେ ଚାହିଁ କହିଲେ “ଦର୍ପଣର ସହକାରୀ ସମ୍ପାଦକ ଆସିଛନ୍ତି ! ମୁଁ ତାଙ୍କ ଦର୍ପଣ ନିମନ୍ତେ ଲେଖା ପଠାଉଥିଲି ବୋଲି ସେ ମୋ ପାଖକୁ ପ୍ରତିମାସରେ ବିନାମୂଲ୍ୟରେ ଦର୍ପଣରୁ ଖଣ୍ଡିଏ ଖଣ୍ଡିଏ ପଠେଇ ଦେଉଥିଲେ । ବର୍ତ୍ତମାନ ଅର୍ଥାଭାବରେ ସେ ମହାଶୟ ପତ୍ରିକାଟି ଚଳେଇ ପାରୁ ନାହାନ୍ତି । ପନ୍ଦରଟି ଟଙ୍କା ଦେବାକୁ ମୋର ଇଚ୍ଛାଥିଲା, କିନ୍ତୁ ତୁମେ ବିରକ୍ତ ହେବ ବୋଲି ଭୟ କରି ପନ୍ଦର ଟଙ୍କା ଦେବି ବୋଲି ପ୍ରତିଶ୍ରୁତି ଦେଇ ଆସିଛି । ଦେଇଥାନ୍ତି ପନ୍ଦରଟା ଟଙ୍କା । ଭଦ୍ର ଲୋକ ଅପେକ୍ଷା କରିଛନ୍ତି । ଆମେତ ଦୁଇଶ ସ୍ଥଳରେ କି ହଜାରରେ ଦୁଇ ହଜାର ଦେଉନାହୁଁ, ଅକାରଣରେ ପନ୍ଦରଟା ଟଙ୍କା ନିମନ୍ତେ କାହିଁକି ଅପେକ୍ଷା କରେଇବା ?”

ଚିନ୍ତା କହିଲେ, “ଦେଉନ ହଜାର ଦି’ହଜାର, ଅର୍ଜନ ଗୁଡ଼ାକ ରଖିଛ ପରା ବାନ୍ଧି । ଟଙ୍କାଟା ଖା ବୋଇଲେ ବଡ଼ ଗଣ୍ଡଚନ୍ତି ! ପୁରେଇଦୁଟି ଆସିଛି କଥାବାର୍ତ୍ତା ହେବକି, କୋଉ କଥା କରିବ । ନାଶି ବୋଲିବା ପଦାର୍ଥ, ତାପେଇଁ ବୋହୂ ଦେଖି ଯାଆନ୍ତି । ଘିଅ କୁଣ୍ଡେ ମୋଟ ହୋଇଯାଉଥାନ୍ତା, ପିଠି ଅଣ୍ଡାଳ ଯାକ ଖୁଆଉଥାନ୍ତି – ”

ଗୋପାଳ ଚିନ୍ତାଙ୍କର ଏତେଗୁଡ଼ାଏ କଥାରୁ ପଦେହେଲେ ନ ଶୁଣି କହିଲେ, “ଆମଦେଶ ଲୋକଙ୍କର ଇମିତି ପ୍ରକୃତି—ଖଜା, ପିଠା, ମାଛ ମାଂସ ଖାଇ ବ୍ରୋଞ୍ଚି ଭାତ କରି ଶହ ଶହ ଉଡ଼େଇ ଦେବେ ପଛକେ ଆମ ଦେଶର ଜିନିଷ ବୋଲି କୌଣସି ଭଲ ଅନୁଷ୍ଠାନକୁ ପଇସାଟିଏ ହେଲେ ଦେବେନାହିଁ । ଭଗବାନ ! ଏ ଅଶିକ୍ଷା, ଏ କୁସଂସ୍କାର କେବେ ଏ ଦେଶରୁ ଦୂରହେବ ! ଦବ, ଅଳ୍ପବୋଉ ! ଭଦ୍ରଲୋକ ଅପେକ୍ଷା କରିଛନ୍ତି । ଦର୍ପଣଟା ଖୁବ୍ ଭଲ କାଗଜ—”

“କି ଦର୍ପଣ, କିସ ମୁଁ କିଛି ଜାଣୁନି, ଏ, ମେ ଘରକୁ କିଏ କେବେ କି ଦର୍ପଣ ପଠେଇଥିଲା କି ? ମୁଁ ତ କେବେ କିଛି ଦେଖିନି ।”

“ତୁମେ ଦେଖିବା ଦର୍ପଣ ନୁହେ ଅଳ୍ପବୋଉ, ମୁଁ ପଢ଼ିବା ଦର୍ପଣ, ସେ ଗୋଟାଏ ମାସିକ ପୋଥିର ନାଁ’ ସେ ପୋଥିଟା ପଢ଼ିବାକୁ ମୁଁ ବଡ଼ ଭଲପାଏ । ସେଥିରେ ପ୍ରତିସଂଖ୍ୟାରେ ମୋର ଲେଖା ବାହାରେ, ପ୍ରତି ସଂଖ୍ୟାରେ ଲେଖାଗୁଡ଼ିକର ସମାଲୋଚନା ବାହାରୁଥିବାରୁ କାଗଜ ପଢ଼ିବାକୁ ବଡ଼ ଭଲ ଲାଗୁଛି ।”

“ବୁଢ଼ାକାଳେ ଆଉଥରେ କ ଖ ଠ ପଢ଼ିବ କୀ, ଶୁଭ ପ୍ରସଙ୍ଗଟି ଆସିଛି, ବାହାଟି କରଦେବା ଗଲା, ସେ ଦର୍ପଣରୁ କି ଖାଇବ, ଚୂଲି ନା ପାଉଁଶ ।”

"ତୁମ ନାତି ପାଠ ପଢୁଛି ପରା, ତାକୁ ଏତେ ପିଲାଦିନରୁ ବିବାହ କରେଇଦେବ କାର୍ତ୍ତିକ—?"

"ଆହା ! ସେ ପାଠ ମୁଣ୍ଡରେ ଅମୃତ ବର୍ଷୁ । ଦିବର୍ଷ ହେଲା କ ବେଳାରେ ସେ ନଆଁ ଇସ୍କୁଲୁ ଦୁଆରେ ମୋ ପିଲା ପାଦଦେଲା, କୋଉ ଡାହାଣୀର ଡାହାଣି ଦୃଷ୍ଟି ମୋ ପିଲା ଦିହରେ ପଡ଼ିଲା ଏକା ଥରକେ କଳା ପଡ଼ଯାଇଛି । ଏ ବର୍ଷ ତାକୁ ଆଉ ଘୁଡ଼ିବ ନାହିଁ ତ !"

"କଳା ହୋଇଯାଉଛି ବୋଲି ମୂର୍ଖକରି ରଖିବ ?"

"ଇ ମା ! ଲୋକ କାଇଁକିବା ମୂର୍ଖ ହେବ ? କେତେ ଇଂରିଜୀ ପାଠ ପଢ଼ିଲାଣି ! ଡାକଦୋବୁଟିରେ କାର୍ତ୍ତିକ, ଲୋକ ସେ ଘରେ ଥିବ, ଅଜା ଡାକୁଛନ୍ତି ବୋଲି ।"

'ଦେଖିଲ, ସେଆଡ଼େ ଭଦ୍ରଲୋକ ଅପେକ୍ଷା କରିଛନ୍ତି, ଦବ ଯଦି ଦିଅ ।'

'ଟଙ୍କେ ନାଇଁକି ମରେଷନାଇଁ, ପନ୍ଦର ଟଙ୍କା ! ଶଗଡ଼େ ଧାନ ବିକଲେ ହୋଉଛି ପନ୍ଦର ଟଙ୍କା । ସ୍ତ୍ର, ସ୍ତ୍ର, ସ୍ତ୍ରୀଙ୍କ ପାଖରେ ଥିଲେ ଟଙ୍କା ଟଙ୍କା ହୋଉଥିବେ ।' ଚନ୍ଦ୍ରାଦେବୀ ଚାଲିଗଲା ପରେ, ଗୋପାଳ କାର୍ତ୍ତିକକୁ ଡାକି କହିଲେ, 'ଗତମାସର ଅବଶିଷ୍ଟ କେତୋଟା ଟଙ୍କା ଥିଲା, ଅଛିତ କାର୍ତ୍ତିକ ?'

'ମୋ ପାଖରେ ଆଉ ପାଞ୍ଚଟଙ୍କା ଅଛି ।'

"ଭଦ୍ରଲୋକ ଦାଣ୍ଡ ଦୁଆରେ ବସିଛନ୍ତି, ତାଙ୍କୁ କହିବୁ ଏଥିଣି ଆଉ ବେଶୀ ଦେଇପାରୁ ନାହାନ୍ତି; ଭବିଷ୍ୟତରେ ସୁବିଧା ହେଲେ ପଠେଇ ଦେବେ । କିଛି ମନେ ନକରି ପାଞ୍ଚଟଙ୍କା ନେବେ ।"

କାର୍ତ୍ତିକ ଟଙ୍କା ନେଇ ଦେଇ ଆସି ଦେଖିଲା, ଉଦାସ ଦୃଷ୍ଟିରେ କାଗଜପତ୍ର ଗୁଡ଼ାକୁ ଗୋପାଳ ଚାହିଁ ବସିଛନ୍ତି । କାର୍ତ୍ତିକ ମୁହୂର୍ତ୍ତେ ତୁନି ହୋଇ କହିଲା, "ଆପଣଁ ଏଁ ଅଧମଁର ଅନେକ ପ୍ରକାରଁ ଦୋଷଁ ଅପରାଁଧ କ୍ଷମାଁ ଦେଇଁଛନ୍ତିଁ । ସେଇଁ ସାହାସଁ ପାଇଁ ଆଜିଁ ପଗୁରଁ ପକେଁଉଁଛିଁ ।" ମନେ ମନେ ଖୁସି ହୋଇ କାର୍ତ୍ତିକର ମୁହଁକୁ ଚାହିଁଲେ । ଗୋପାଳ ଭାବିଲେ, ଏଇ କାର୍ତ୍ତିକର ଆସିଲାବେଳେ କଥାକହି ଜାଣୁ ନଥିଲା । ବର୍ତ୍ତମାନ ଭୂମିକା କରି କଥା ଆରମ୍ଭ କଲାଣି । କାର୍ତ୍ତିକ ତାର ସେଇ ଚିରକାଳର ଅଭ୍ୟାସ କ୍ୟାନମୁଣ୍ଡ ଆଉଁସି କହିଲା, "ଆଜ୍ଞାଁ, ଆପଣଁ ତ୍ରୁଁ ସ୍ତ୍ରୀମାନଙ୍କୁଁ ସ୍ୱାଧୀଁନତାଁ ଦିଅନ୍ତିଁ ବାଁ ଦିଆଁଯାଉଁ ବୋଲିଁ ଅନେଁକଁ ପ୍ରକାରଁ ଲେଖାଁ ଲେଖିବଲଣିଁ । ଆଉଁ ପୁରୁଷମାନଙ୍କ ସ୍ୱାଧୀଁନତା କମେଁନ୍ତେଁ କଏଁ ଲେଖିବଁ ? ଅନ୍ୟାଁସୁଁ ସହିଁଗଲେଁ ଲୋକେଁ ତାଙ୍କୁଁ କହିଁନ୍ତି ଉପ୍ଯାଁକ୍ତ ବୋଲିଁ ।"

"ପଚିଶି ବର୍ଷ ଚୁଲି ଜାଳି ଲୁହା ଛଡେଇ ତା ଉପରେ ହାତ ବୁଲେଇଲେ ହାତ ପୋଡ଼ିବା ଛଡ଼ା ଆଉ କୌଣସି ଲାଭ ହେବ ନାହିଁରେ କାର୍ତ୍ତିକ ।" କାର୍ତ୍ତିକ ଜବାବ ନଦେଇ ଚାଲିଗଲା ଭିତରକୁ ।

କାର୍ତ୍ତିକ ଚାଲିଗଲା ପରେ ଗାଁର ବୀର ବାଉଳ, ବୟସ ଷାଠିଏ କି ସତୁରି ହେବ, ଦୁଆର ଠେଲି ଆସିଲା ଭିତରକୁ । ବୀରର ଲମ୍ବା ଚଉଡ଼ା ଦେହ, ବୟସ ବଳରେ ଲଇଁ ଯାଇଛି କଟିପାଖରୁ । ପାଚିଲା ବାଳ ଗଣ୍ଡିକ ଉଡୁଛି ଫୁରୁ ଫୁରୁ ହୋଇ । ଗୋପାଳଙ୍କ ମୁହଁକୁ ଝରେଖି ଚାହିଁ, ବସିପଡ଼ିଲା ଦୁଆର ପାଖକୁ ।

"କିରେ ବୀର ? କୁଆଡ଼େ ବୁଲି ଆସିଲୁ ?"

ବୀର ପାନ ପାକୁଳେଇ ପାକୁଳେଇ ମୁହଁକୁ ଚାହିଁ ଟିକଏ ରହି କହିଲା, "ଆସିଲି ବାହାରେ, ଆଜ୍ଞା କଣ ?" ରହି ପାନ ପାକୁଳେଇ ପାକୁଳେଇ ପୁଣି କହିଲା, "ପିଲାଦିନର କଥା ମନେ ପଡୁଚି ନା ? ପିଲାଦିନେ ତମେ ଅଉଣ୍ଡା କଟି କାନ୍ଦିଲା ବେଳେ ମୁଁ କାଖ କରି ନେଇ ଯାଉଥାଏ—ବଗିଚାଆଡ଼େ ବୁଲେଇ । ସେ ବଳ ତ ଆଉ ଏବେ ନାଇଁ । ହଁ ସେ କଥାତ ଗଲାଣି । ତମେ ପାଠ ପଢ଼ି ବଡ଼ ଲୋକ ହେଲ । ଅନନ୍ତର କଥା ଆଉ କଣ ବିଚାର କରୁଛ ? ତାର ପାଞ୍ଚଟା ପିଲା, ମଣ୍ଟିଆଟିକି ପଇତା ଦିଏ ପକାଇବ ବୋଲି ଯୋଗାଡ଼ କରୁଛି । ବଡ଼ ପିଲାଟି ପାଠ ଦିଅଷରି ପଢୁଛି ! ହାତରେ ପଇସା ନାଇଁ । ଆଜ ଦୁଃଖ ସୁଖ କଥା ହେଉ ହେଉ ଅନନ୍ତ କାନ୍ଦ

ପକେଇଲା । ଘରର ଜନ୍ମ କଣ୍ଢେଇ ପଦାର୍ଥ ଗୋଟିଏ ଆଣି ରଖ । ପର ତ ନୁହେଁ !" ଚନ୍ଦ୍ରାଦେବୀ ଭିତରକୁ ଆସୁ ଆସୁ କହିଲେ, "ବାରିକ ଘର ବୁଢ଼ା ପୁଅ ଆସିଚ କହେ ?"

"ହଁ ଆସିଥିଲା, ଅଜନ୍ତଟା ବଡ଼ ଦୁଃଖରେ ପଡ଼ିଛି । ତା ପିଲାଟିକି କିହେଲେ—ହଁ, ମୁଁ ବୋଲୁଥିଲି କଣକି, ମାସି ଦଶ ଟଙ୍କା ହେଲେ ଦେଇଥାନ୍ତେ ।"

ଚନ୍ଦ୍ରାଦେବୀଙ୍କ କ୍ରୋଧ ଅଗ୍ନିଟା ହୁହୁ କରି ଜଳି ଉଠିଛି ପୁଣି ଦପ୍ କରି ଲିଭିଗଲା । ସେ ଠକ୍ ଠକ୍ କରି ହସି ପକେଇ କହିଲେ, "ଆହା ! ଶୁଣୁନ କିଆ ବାରିକ ପୁଅ, ଦଶହେଉ, ପାଞ୍ଚହେଉ, ହାତରେ ଥିଲେ ସିନା ହାଣ୍ଡିଟାକର ବଳ । ତମେଇ ଦେଖୁଚ ! ତାଙ୍କୁ ରୋଗ, ମତେ ରୋଗ, ସେ ପୋଡ଼ା ଝିଅଙ୍କୁ ରୋଗ । ବଇଦ ବଇଦ ଡାକ୍ତର ଡାକ୍ତର କରୁକରୁ ସବୁ ଯାଉଚ, ସେ ପିଲୁପିଲା ସଉଗରେ ବସି ଅମୃତ ଦୃଷ୍ଟିରେ ଅନେଇଁଥାନ୍ତି । ସେଇ ଯାହା ପାଞ୍ଚ ଭରଣ କି ଦଶ ଭରଣ ଥିଲା, ସେତକ ଧୋଇ ଶୁଖେଇ ଖାଇ ବର୍ଷକ ଚଳିଯାଉଚ, ମୁଣ୍ଡ ଦେଖି ସିନା ସବୁ କାରବାରଓ ବାରିକ ପୁଅ ! ଜାଣୁନ, କୁଟୁମ୍ବ ଅଛିଚ, ପୁଅ ନାତି ଗୋଟେ ଧରି ଘର କରୁଚ ? ତାର ସେ ତ ପୋଡ଼ାଜଳା ବୁଦ୍ଧି ଧରି ଘରର ସୁନା ରୁପା ସାରିଲା ବା'ରେ ଭୁଇଁ ଉପରକୁ ହାତ ବଢ଼େଇଲା । ଦେଖି ରଖି ଖାଇଲେ ସିନା ହବ । ଅଛି ବୋଲି ଦି' ହାତରେ ଖାଇଲେ ଦିନ ସରିବ । କିଓ ପୁଅ ?"

"ନାଇଁ ନାଇଁ ମିଛ ଗୁଡ଼ା କିଏ ତୁଣ୍ଡରେ ଧରିବ ? ସୁନା ରୁପା ସେ କେବେ ଢକାଭଙ୍ଗା କରିନାଇଁ । ତାର ତ କିଛି ନଥିଲା, ବିକା ଭଙ୍ଗା କରିବ କୁଆଉ । କୁଟୁମ୍ବ ଭାରି ହେଇଗଲେ, ଧନେଇଁ ପଲ୍ଲୀର ଭୁଇଁ ଖଣ୍ଡକ ବିକିଦେଲା । ମୂଲ ଦେଇ ପାରିଲା ନାଇଁ ଭୁଇଁ ଖଣ୍ଡିକ ଭାଗ ଚାଷକୁ ଲଗେଇଦେଲା । ଗୁଣ୍ଡିଆଉ ଟାଣୁ ଟାଣୁ ପଡ଼ିଗଲା । ହଁ ! ଯାଉ ସେକଥା, ଭଗବା ହେବନ ତାକ । ହଁ ! ଶୁଣୁଚୁଥିଲି, ପଡ଼ୁଚୁଥିଲି, ନାତୁଣୀ ପୁଅ କଲି ବୋଲି ଶୁଣିଲି ଯେ ତାର ଗୋଟିକୁ ଆଣିଥିଲେ ହୋଇ ନଥାନ୍ତା ?"

"ନାଇଁହେ ବାରିକ ପୁଅ, ମୋର କୋଉ କଥା ରହୁନାଇଁ । ସେଇ କଥା କହିଲେ ପୋଷାପୁଅ ଗୁଣ୍ଡାଚୁଅ । ପୋଷିଆ ପୁଅ କରିବେ ନାଇଁ ବୋଲି ତ ଧରିବସିଛନ୍ତି । ନାତିକ କାଏ ପୁଅ କରିଚ ବା ! କା ଜିଉ ଛାଡ଼ିପଡ଼ୁଛି । କାଏ ଏକଥା ତୁଣ୍ଡରେ ଧରୁଚବା ?"

"ପିଲାଟା ପଢ଼ୁଚି, ବର୍ଷକୁ ବର୍ଷେ ପିଆସ (ପାସ) ହୋଇଯାଉଚି । ପଢ଼ିଥିଲେ ଭମଣ ଘର ପିଲା ବୋଲି ନାଁ ରହନ୍ତା । ମାସିକି ପାଞ୍ଚଟଙ୍କା ହେଲେ ଦେଇଥାନ୍ତେ କି ?"

"ଆହା, କହିଲଟଗ୍, ପାଞ୍ଚ ହେଉକି ପଚିଶି ହେଉ, ଥିଲେନା ?"

ବାରି ବାରିକ ମନେ ମନେ କ୍ରୋଧ ହୋଇ "ହଁ ହେଉ" ବୋଲି କହିଦେଇ ଉଠି ଚାଲିଗଲା ।

## ଦୁଇ

ଦିନ କାହାରି ପାଇଁ ଅପେକ୍ଷା କରୁନାହିଁ, ପ୍ରକୃତିର ଡାକରେ ଦିନ ଚାଲିଛି ଅବାରିତ ଗତିରେ । ଏହିଭିତରେ ଗୋପାଳ ପ୍ରବେଶ କରିଛନ୍ତି ନିଜର ଜୀବନ ନାଟକର ତୃତୀୟ ଅଙ୍କରେ, ଦିନକୁ ଦିନ ତାଙ୍କର ଦୈନ୍ୟ ବଢ଼ିଚାଲିଛି ବଡ଼ । ଗୋପାଳଙ୍କ ଚିର କାଳର ଅଭ୍ୟାସ କେଉଁଠି ଗୋଟାଏ ଯାତ୍ରା ସମ୍ମିତି ହେଲାତ ଦି' ଶହଟଙ୍କା ଚାନ୍ଦା ଦେବ ,କେଉଁଠି ଗୋଟାଏ ନୂଆ ପତ୍ରପତ୍ରିକା ବାହାରିଲାତ ଦି' ମଗେଇ ରହିପାରିବେ ନାହିଁ । ଦରମା ପାଇଲାବେଳେ ସମସ୍ତ ସମସ୍ତ ଦଶ ପଚିଶି ଖରଚ କରିଦେଲେ, କୁଣ୍ଠିତ ହେଉ ନଥିଲେ; ପୁଣି ଟଙ୍କା ପାଇଲାଯାଏ ଅବଶ୍ୟ ତାଙ୍କର ବିରକ୍ତିଟା ରହେ । ପେନ୍‌ସନ୍ ପାଇବାପରେ ଚନ୍ଦ୍ରାଦେବୀ ଗୋପାଳଙ୍କ ଅଜାଣାରେ ଯେତେ ପାଉଥିଲେ ଭଲ ଘର, ଭଲ ଘିଅ ଭଲ ଖୁଆ ଇତ୍ୟାଦି ଯେତେ ଭଲ ଜିନିସ ତାଙ୍କ ସମସ୍ତ ନପାଇ, ତାଙ୍କୁ' ଜାଉଣି

ଅକାରଣରେ ହେଲେ ଗୋପାଳଙ୍କ ଉପରେ ବିରକ୍ତ । ଗୋପାଳ ବି ଅତିଷ୍ଠ ହେଲେ ନିଜର ବ୍ୟସ୍ତ ସମ୍ବନ୍ଧରେ ଚିନ୍ତାକରି କରି । ସେଇ ଦୁଃଖ ଦୈନ୍ୟରୁ ଅବ୍ୟାହତି ପାଇବା ନିମନ୍ତେ ଦିନରାତି କାଗଜ କଲମ ଧରି ଲେଖା ପଢ଼ା ଭିତରେ ଲିପ୍ତ ରହିବାକୁ ଚେଷ୍ଟା କଲେ ଗୋପାଳ ସମସ୍ତ ସମସ୍ୟାରେ ଶାନ୍ତି ପାଇବା ଆଶାରେ, କେଉଁଠି ପଲ୍ଲୀ ମଙ୍ଗଳ ସମିତି, କେଉଁଠି ଅନାଥ ସହାୟଣୀ ସମିତି ଗଢି ନାନା ଅଶାନ୍ତି ଭୋଗକଲେ ମଧ୍ୟ ସେଥି ସଙ୍ଗେ ସଙ୍ଗେ ।

ଜ୍ୟେଷ୍ଠମାସର ଦି ପହର, ବାଡ଼ି ବାରଣ୍ଡାରେ କାର୍ତ୍ତିକ ତାର ସପ ଖଣ୍ଡେ ପାରିଦେଇ ଗଡ଼ପଡ଼ ହେଉହେଉ ଗୋପାଳଙ୍କ ଗୀତ-ଖାତା ଧରି ଗୁଣୁ ଗୁଣୁ ହେଉଥିଲା । ଗୋପାଳଙ୍କ ପୂର୍ବପାଖର ଦାଣ୍ଡ ଭାଗଟାରେ ଗାଁର ସ୍କଟଶାଳୀ, ବାଡ଼ପାଖଟା ଧନପତି ଭିହାଡ଼ିର ଘର । ଭିହାଡ଼ି କୋଉକାଳୁ ମଲାଣି, ତାର ଗୋଟିଏ ଝିଅ ଥିଲା, ନାଁ ଶିଗ୍ରା । ତାକୁ ତାର ଅନାଥ ମା' ବିଭାକରିଦେଲା' ଷାଠିଏ ବର୍ଷର ବୁଢ଼ା ସପନ ଶତପଥିଙ୍କ ସହିତ । ନଅ ବର୍ଷର ଝିଅ ଶିଗ୍ରା ମା'କୁ ଛାଡ଼ିଗଲା ସ୍ୱାମୀର ଘର ଚଳେଇବାକୁ । ଶିଗ୍ରାର ସୁଶ୍ରୀ ମୁହଁଟି ଦେଖି ସପନ ଶତପଥିଏ ପାକୁଆ ପାଟିରେ ମଧୁର ହସି ପ୍ରଣୟ ପ୍ରାର୍ଥନା କରିବା ଚେଷ୍ଟାରେ ଥିବାବେଳେ, ତିନଦିନର ହଠାତ୍ ବାତ ଜ୍ୱରରେ ଇହଧାମରୁ ବିଦାୟ ନେଲେ । ଏହାପରେ ଶିଗ୍ରା ବିଧବା ହୋଇ ପୁଣି ଆସିଲା ମା' ପାଖକୁ । ବର୍ତ୍ତମାନ୍ ଶିଗ୍ରା ବୈଧବ୍ୟ ଦଶାରେ ରହି ପଚିଶିବର୍ଷ ବୟସରେ ପାଦ ଦେଲାଣି । ଶିଗ୍ରା ସହିତ କାର୍ତ୍ତିକର ଦେଖାହୁଏ ଅନେକ ସମୟରେ । ହଠାତ୍ ଦେଖା ହେଇଗଲେ ଶିଗ୍ରା ଛନ୍ନ ହୋଇଯାଏ । କିନ୍ତୁ ସେ ଯେତେବେଳେ ଜାଣି ଜାଣି କାମଥିବା ବାହାନାରେ କାର୍ତ୍ତିକକୁ ଦେଖିବା ଉଦ୍ଦେଶ୍ୟ ନେଇ ଚିନ୍ତାଙ୍କ ଘରକୁ ଆସେ, ସେତେବେଳେ ସହଜ ଭାବରେ କାର୍ତ୍ତିକ ସହିତ କଥାବର୍ତ୍ତା କରି ଘରକୁ ଯାଏ । ଦିନେ-ଦିନେ ରାତି ନ ଶୋଇ କାର୍ତ୍ତିକର କଥା, ତାର ମୁହଁ ଆଖିର ମନୋମୁଗ୍ଧକର ଭଙ୍ଗି ଭାବି ଭାବି ଶିଗ୍ରାର ଚିତ୍ତ ଅଥିରହୁଏ । ବ୍ୟାକୁଳବାସନା ଖୋଜିବୁଲେ କାଞ୍ଚନର ଚରଣ ଆଶାରେ । ଶିଗ୍ରାକୁ ଦେଖି କାର୍ତ୍ତିକ ଚକିତହୋଇ ଉଠି ବସି କହିଲା, "ମାଁ ହେଇଛନ୍ତି ଶୋଇଁଛନ୍ତି—",

ଶିଗ୍ରା ମନରେ କପରି ଗୋଟାଏ ଅବ୍ୟକ୍ତ ଆନନ୍ଦଭାବ ଜାଗି ଉଠିଲା । କେତେଥର ବାଟରେ ଘାଟରେ କାର୍ତ୍ତିକ ସହିତ ତାର ଦେଖା ହୋଇଛି, ଦୁଇଚକ୍ଷୁର ମିଳନ ଘଡ଼ିଘଡ଼ି ଦୃଷ୍ଟି ଫେରେଇ ନେଇଛି ଶିଗ୍ରା । ଆଜି କିନ୍ତୁ ଏଇ ନିର୍ଜନ ମଧ୍ୟାହ୍ନରେ ଦ୍ୱିଜନ ମିଳନ କଥା ସ୍ମରଣ କରୁକରୁ ଉଚ୍ଛଳିତହୋଇ ଉଠିଲା ଶିଗ୍ରା । ସେ ଉତ୍ସାହରେ କାର୍ତ୍ତିକର ମୁହଁକୁ ଚାହିଁଲା, କିନ୍ତୁ କଣ କହିବ ପଦେହେଲେ କଥା ଖୋଜି ପାଇଲାନାହିଁ, ଜ୍ୟେଷ୍ଠର ଝଞ୍ଜା ବହିଗଲା ଦେହ ଉପରଦେଇ । ଶିଗ୍ରା ତାର ଦେହର ବସନ ଜାକିଜୁକି ଧରି ଆଖି ପୋଛି ନେଲା । କାର୍ତ୍ତିକ ଶିଗ୍ରାର ମନଭାବ ବୁଝିପାରିଲା ହୁଏତ । ସେ ପରିହାସର ଛଳନା କରି କହିଲା "ନୂଆ ଲୋକଙ୍କୁ ଦେଖିଲା ପରି ଲାଜେଇଁ ହଇଁଗଲ କାହିଁକି ଶିଗ୍ରା—"

ଶିଗ୍ରାର ମନେହେଲା, କାର୍ତ୍ତିକ ତାର ହୃଦୟପୁରର ନୀରବ କାମନା ପୂର୍ତ୍ତି କରିବାକୁ ବ୍ୟଗ୍ର ହୋଇ ବସିଛି । ଏଇ ଆନନ୍ଦରେ ଶିଗ୍ରାର ଆଖିରୁ ଝରଝର ହୋଇ ବହିଗଲା ସଞ୍ଚିତ ଅଶ୍ରୁ । ସେ ଆଖି ପୋଛିପକେଇ କହିଲା, "ଦୁଃଖୀଲୋକ, ମା ଶୋଇଛନ୍ତି ବୋଲି ନଆସିଲେ ଚଳିବ କମିତି ? ଧାନ କୁଟିବାକୁ ଥିଲା ଯେ—"

କାର୍ତ୍ତିକ ତାର ଗଭୀର ଅନୁଭୂତି ଗୋପନ୍ କରି, ସହଜ ଭାବରେ କହିଲା, "ସଂସାରେ ଦୁଃଖୀ କିଏ ? ଦେଖୁଛନା, ଆମ ଆଈଁ ଲେଖିଛନ୍ତି, ଠିକ୍ ତମରି ପରି ଗୋଟିଏ ଝିଅ ଥିଲି, ଭାବହୋଇଥିଲି ମାତ୍ର ବୁଢ଼ାବର ସହିତଁ । ତାର କୌଣସି ପରିଚୟ ନଥିଲା । ବୁଢ଼ାଟା ମଲା ଚାପିରେ ସେ ଝିଅଟି ବିବାହ କଲା ଆଉଁ ଜଣକୁ । ଯାହାକୁ ସେ ଅନେକ ଦିନରୁ ଅତି ଭଲ ପାଉଥିଲା ।" ଶିଗ୍ରା ସରମରେ ଶିହରି କାର୍ତ୍ତିକର ମୁହଁକୁ ନଚାହିଁ କହିଲା, "ଯାଉଛି,

ପରେ ଆସିବ, ଧାନ ହଜାଢିବାକୁ ଥିଲୁ ଯେ ଆସିଥିଲ ।" ଶିଶୁଆ ଝୁଲଣଗଳାପରେ କାର୍ତ୍ତିକ ବନ୍ଧ ଲେଉଟେଇ ବାହାର କଲା ଗୋଟିଏ ଗୀତ— ।

"ସ୍ୱପନେ ତୁମକୁ ଦେଖିଲି ସୁନ୍ଦରୀ
ଶୟନ ପାଳୁଣେ ବସି
ସୁନ୍ଦର ତବ ଶତଦଳ ହାତେ
ଧୀରେ ଦେଉଥିଲ ସ୍ପର୍ଶି
ବନ୍ଧେ ଚାପି ମୁଁ କରୁଛି ଆଦର
ଆବେଗ ଆବେଶେ ଚୁମିଛି ଅଧର
ନମିଳତ ଆଖି ଖୋଲି ତୁମେ ଖାଲି
ଦେଇଥିଲ ଥରେ ହସି ।
ନିଦରୁ ଉଠି ମୁଁ ଚମକି ଚାହିଁଲି
କେତେବେଳେ ତୁମେ ଯାଇଅଛ ଚାଲି
ସେଦିନୁ ଯେତେ ମୁଁ ରଚିଲିଣି ମାଳା
ସବୁ ହେଉଅଛି ବାସୀ ।"

କାର୍ତ୍ତିକ ଗୀତର ଭାବରେ ତନ୍ମୟ ହୋଇ, 'ହେଉଅଛି ସବୁ ବାସୀ' ପଦଟାକୁ ବାରମ୍ବାର ଆବୃତ୍ତି କରୁଥିଲା । ଅଗଣା ଆଡୁ ଚନ୍ଦ୍ରାଦେବୀ ଡାକଲେ, "ଆରେ କାର୍ତ୍ତିକ, ଏଁ, କା'କୁ ଧରି ଗୀତ ଝାଡୁଛ ଲଗେଇଚୁରେ ? ଆମ୍ବଗୁଡାକ କଟା ହବ, ଆମ୍ବୁର ହବ, ଆମ୍ବୁଲ ହବ—"

କାର୍ତ୍ତିକ ଦୂରରୁ ଆମ୍ବୁର ଆମ୍ବୁଲର କଥା ଶୁଣି ଭାବିଲା, ଆମ୍ବୁର ଆମ୍ବୁର, ଆମ୍ବୁଲ ଆମ୍ବୁଲ ହନରାତ ଲାଗିଛି ଯେ, ମନୁଷ୍ୟଙ୍କୁ ଟିକିଏ ବସେଇ ଉଠେଇ ଦେଉନାହାନ୍ତି । କାର୍ତ୍ତିକ ଉଠିବାକୁ ଉପକ୍ରମ କରୁନଥିଲା, ଅନୁ ବାରଣ୍ଡା ପାଖକୁ ଆସି କହିଲା, "ବାଟରୁ ଉଠେରେ କାର୍ତ୍ତିକ, ବୋଉ ପିଲା ନଗାଆଡେ ଯିବ ।"

ଶିଶୁଆ ମା ସମୟେ ସମୟେ ଚନ୍ଦ୍ରାଦେବୀଙ୍କ ପାଖରୁ ଖୁଦ ହଟା, ଚୁଡଲ ହଟା, କୋଉଦିନ କଖାରୁ ଖଣ୍ଡେ ବାଇଗଣଟେ, ପାଏ । ଖୋସାମଦ କରିବାକୁ ଶିଶୁଆମା ଓସ୍ତାଦ, ଅର୍ଥାତ ଅତି ପାରଗ । ଚନ୍ଦ୍ରାଦେବୀଙ୍କ ପାଖରେ ଲୋକର ପ୍ରଶଂସା କ ଭାବରେ କଲେ ଚନ୍ଦ୍ରାଦେବୀ ସନ୍ତୁଷ୍ଟ ହୁଅନ୍ତି ସେ କଥା ଶିଶୁଆମା'କୁ ଜଣା । ବାରଣ୍ଡାରୁ କାର୍ତ୍ତିକ ଚାଲିଗଲା ପରେ ଚନ୍ଦ୍ରାଦେବୀ ଆସି ବ୍ୟସ୍ତଭାବରେ ଚସିଭଙ୍ଗ ବିଷାଦ କଲେ, କଣ କରିବେ ଧନକୁନ୍ଦନ ଖରଚ ବଢିଯାଇଛି । ତାଙ୍କ ଚିନ୍ତାଧାରାରେ ବାଧାଦେଇ ଶିଶୁଆ ମା ଗୋଟିଏ ଗୋଟିଏ ହୋଇ ଆସି ଚନ୍ଦ୍ରାଙ୍କ ଗୋଡଧରି କରିପଡି ହାତ ବୁଲେଇ ଦେଇ ଦେଇ କହିଲା, "ହଇହେ ଭାଉଜ (ଗାଁ ଲେଖାରେ) ତମେ ମଧ୍ୟ ଜାଣୁନ ? ଭାଇନା ଯେତେ ଟଙ୍କା ପଇସା ଖର୍ଚ୍ଚ କରି ଦେଇଛନ୍ତି, କାଲି ଦୁରପଥ ବାରିକାଣୀ କହୁଥିଲା । ତାଙ୍କୁ ପାଞ୍ଚବର୍ଷ ହେଲା ଜାତିରୁ କାଢ଼ି ରଖିଥିଲେ, ଭାଇନା ପୁଣି ହକୋଡ଼ି ଟଙ୍କା ଖରଚ କରି ତାଙ୍କୁ ଜାତିରେ ମିଶେଇ ଦେଲେ ।"

"ହଁଲେ ଶିଶୁଆ ମା, ଯାହା ହୋଉଛି ମୋ ଭାଗ୍ୟକୁ କହିବନା, ଆଉ କା'କୁ କହିବ ? ଜନମ କଲାବା ପଦାର୍ଥର ପଦାର୍ଥ, ମାଗିଆଣିଲେ, ତାଙ୍କୁ କମିତ ଯୋଗ୍ୟର କରିବା, ପାଞ୍ଚପଇସା ଧାଇତ ସୁମରି ରଖିବା, କୋ କଥାର କଲେ ନାହିଁ । ଗାଁର ଜଣା ଜଣଏ ଆସି ନଗେଇ ଯୋଟେଇ ଦେବାକୁ ଅଛନ୍ତି, ପୁତୁରାଙ୍କୁ ଆଣ ପୁତୁରାଙ୍କୁ ଆଣ ବୋଲି । ଯେତେହେଲେ ପରପିଲା ମୋ ମନକଥା ଜାଣିବ କଲେ ଶିଶୁଆ ମା ? ଅନନ୍ତଆର ପୁଅଟା ତ ଖାଲି ଶ୍ୱେଲୁଟା—"

ଶିଶୁଆମା ଅଧିକ ପ୍ରିୟପାତ୍ରୀ ହେବା ଆଶାରେ କଥାଟାକୁ ବଢେଇ କହିଲା, "ଆହା ଶ୍ୱେଲୁଟା ବୋଲି ଶ୍ୱେଲୁଟା, ବୁଢ଼ାଶ୍ୱେଲୁଟା । ସେଦିନ ଜଗେଇ ସାଆନ୍ତରଙ୍କ ଘରେ ମୁଖାଗିରି ପଣି ଭାରି ରୂପା ଥାଳିଟାକୁ ଧରି ପଳେଇ ଆସିଲା । କା'ଭୁଲେ ପୁଣି କାଙ୍କୁ ନ'ଛ । ତମ କୋଳ ତ ଖାଲି ସୁନା ମୁଣ୍ଡାଟି । ଚନ୍ଦ୍ରାଦେବୀ ଆଉକଣ କହିବାକୁ ଯାଉଥିଲେ । 'ଆଇ, ଆଇଲେ,' ବୋଲି ଡାକି ଡାକି ପାଖକୁ ଆସିଲା ଟୋକା । ଚନ୍ଦ୍ରାଦେବୀ ହାତବଢ଼େଇ, କୋଳର ହାତ ଟାଣି ପାଖରେ ବସେଇବା ଚେଷ୍ଟା କରୁ କରୁ ପଚାରିଲେ,

"ଏ ଦି'ପହର ଖରାଟାରେ କୁଆଡ଼େ ଯାଇଥିଲୁରେ ବାପ । ଆସେ ଆସେ ବସିବା । ଶିଶୁଆ ମା ଆଈ' ତତେ ଯେତେ ପ୍ରଶଂସା କରୁଥିଲା ।" କୋକ ହାତଛଡେଇ ନେଇ କହିଲା, "ଟଙ୍କା ଦେବୁପରା ଆଈ ? ଦୁଣ୍ଡ, ଗଜବା, ମୁଁ, ସବୁ ବାହାରିଛୁ ସିନେମା ଦେଖିଯିବୁ ବୋଲି ।"

"କାଲି ଟଙ୍କା ନେଇଥିଲୁ, ଆଜି ଆଉଥରେ ମାଗୁଚୁ ।"

"କାଲିର ଟଙ୍କା କାଲି ଖରଚ ହୋଇଗଲାଣି, କାଲିର କଥା ଆଜି ଆଉଥରେ ପଚାରୁଚୁ ? ତୁ ତ ସେଦିନ ଗଜବ ଆଉ ଦୁଣ୍ଡ ପାଖରେ, ସେ ପିଲା ସିଗ୍ରେଟ୍ ଖାଉବୋଲି ଗେଲ୍‌କରି କହିଦେଲୁ, ଏବେ ମୋର ସିଗ୍ରେଟ୍ ଖରଚ ନିତି ଟଙ୍କାଟେ ଦେବବୋଲି କହିଥିଲୁ, ଦେ ଏବେ ।"

ଚିନ୍ତା ବ୍ୟସ୍ତ ସତର୍କ ଭାବରେ କହିଲା "ମୋ ବାପ, ମୋଧନ, ସେ ଘରେ ଅଜା ଅଛନ୍ତିରେ କୋକ, ପାଟିତୁଣ୍ଡ କରେ ନାଁରେ—"

'ଅଜା ଥାନ୍ତୁ କି ଗଜା ଥାନ୍ତୁ, ଡରମରି ରହିବି ବୋଲି ମୁଁ ଏଠିକି ଆସିଚି କଲେ ଆଈ ? ଅଜାର ଅଜାକୁ ମଧ ଆମେ ଡରିବା ଲୋକ ନେହୁ ।" ଚିନ୍ତାଦେଈ କୋକର ହାତଟାଣି ଭିତରକୁ ଯାଉ ଯାଉ କହିଲେ, 'ଓଲଟା କଣ୍ଟି ଜାଣୁ ନାଇଁଲେ ଶିଶୁଆମା ।' ଶିଶୁଆମା ଭାବିଲା ଗେଲ୍‌କରିବା ଫଳ ପାଇବ ଯେ ।

ଚିନ୍ତାଦେଈ କୋକକୁ ଟଙ୍କାଦେଇ ବୋଧବାଧ କରି ଅଗଣା ଆଡକୁ ଆସିଲାବେଳକୁ, ଅନୁ' ନଦୀଆଡୁ ଆସି ଗାମୁଛା ଶୁଖେଇ ଶୁଖେଇ କହିଲା, 'ନାହିଁଯେ, ମୁଁ ଆଉ କାହାରି କଥା କହୁନାହିଁ । ଏତେ କଥା ଯଦି ତମମାନଙ୍କର ମନରେ ଥିଲା ମୋ ପିଲାକୁ କାହିଁକି ଆଣିଲ ? ମୋ ପିଲା ମୋ ଘରେ ଶାଗ ପେଜ ଖାଇ, ଭିକମାଗି ହେଉ, କଣ୍ଟଥାନ୍ତାନା ! ମୁଁ ମୁହଁପୋଡ଼ି କାହିଁକି ହଁ କଲି—'

ଚିନ୍ତା ଉଦ୍ବିଗ୍ନ ହୋଇ ପଚାରିଲେ, 'କଣ ହେଲାଲୋ ?'

'କଣ ହବ ! ଯାହାହେଲା ହେଲା । ମୋ ପିଲାକୁ ଛାଡ଼ିଦେ । ମୋ, ବାଟ ମୁଁ ଦେଖିବି, ଗଲା—ମୋ ପିଲାକୁ ଆଣିଲୁ, ନାଁକୁ ବାରଭୁଟେ କରିଦେଲୁ । ବରତ ଭୋଜି କରିବାକୁ ମୋ ଘରେ ମୁଗ ଚାଉଳ ନ ଥିଲାକି ?'

"କିସ ହେଲା କହୁନୁ କାହିଁକି ଲୋ ?"

"କଣ ହବ ! ନାଇଁ ମୋ ପିଲାକୁ ଆଣିଲ, ଯଦି ତା ନାଁରେ ଲେଖି ଦେଉନ ? ନଈରେ ସିଧମା କହୁଥିଲା, ସୁନାପଦରେ ଥିବାର ଘର ଖଣ୍ଡିକ ତା ଜୋଇଁ କିଣିଲା ହଜାରେ ପାଞ୍ଚଶକୁ । ଭୂଇଁ ଖଣ୍ଡିକ ଜବାବ ହୋଇଯାଇଛି । ବାପା ତ ତାଙ୍କର ସେ' ସେ ଆଡୁ ସେଆଡୁ ସବୁ ଖରଚ କରି ଦେଉଛନ୍ତି, ମୋ ନାଁରେ ଅଛି ଲୋ ଝିଅ, ମୋ ନାଁରେ ଅଛିଲେ ଝିଅ ବୋଲି ଭୋର ଭୁ କହିହେଉଥା । ତମେ ତ ସବୁ ସାରିଦେବ, ମୋ ପିଲାକୁ କାହିଁକି ଆଣିଥିଲୁ ?" କାର୍ତ୍ତିକ ସେଇ ପାଖରେ ବସି ଆମ୍ବ କାଟୁଥିଲେ, ଅନୁ କହିଲା, "ସତ କହୁବୁଟିରେ କାର୍ତ୍ତିକ ? ସ୍ୱାଙ୍କେ ଯଦି ଶୂନ୍ୟେ ଶୂନ୍ୟେ ସବୁ ଉଡ଼େଇଦେବେ, ତମା ପିଲାକୁ କାହିଁକି ଆଣିଥିଲେ ? ଆଜି ଏକା ମୋ ପିଲା ନାଁରେ ଲେଖିଦେଲେ ତ ଲେଖିଦେବେ, ନଇଲେ ମୋ ପିଲାକୁ ମୁଁ ମୋ ଘରକୁ ନେଇଯିବି ।"

କାର୍ତ୍ତିକ କୃତ୍ରିମ ସହାନୁଭୂତି ଦେଖେଇ କହିଲା, "ନାହିଁଯେ ଆଉ କଣ ହେ । ବର୍ଷକୁ ବର୍ଷ ଦଶ ପଚାଶ ହଜାର ରଖିଲେ ସିନା, ଅମୁକ ଲୋକ ଭଲ ପଇସା ସଞ୍ଚିଛି ହେ ବୋଲି ଲୋକେ ବୋଲିବେ । ମଣିଷ ହେଇକରି ଖରଚ କରିଦେବ କହେ ? ଜମାରୁ ଖରଚ କରିବା ଉଚିତ ନୁହେଁ ।"

ଚିନ୍ତା ମନେ ମନେ ରାଗିଯାଇ ଚାଲିଗଲେ ଗୋପାଳଙ୍କ ଘରଆଡକୁ । ଗୋପାଳ ତାଙ୍କର ସେହି ଅଧଭଙ୍ଗା ପୁରୁଣା ଚଉକିରେ ବସି, ସେଇ ଅଧଭଙ୍ଗା ଟେବୁଲ ଉପରେ କହୁଣି ରଖି ଉଦାସ ଦୃଷ୍ଟିରେ ଚାହିଁ, ନିଜର ଅତୀତ ଜୀବନର ଅନେକ କଷ୍ଟ-କଥା ଚିନ୍ତା କରୁଥିଲେ । ଚିନ୍ତାଦେଈ ଘର ଭିତରକୁ ତୁକ

କହୁଥିଲ, ଏଁ, ଧନଗଞ୍ଜ କାଲୁଭୁଷା ଭିତରେ ମୁଣ୍ଡ ମାରିବେଇ କିସ ସବୁ ଅନ୍ଧଶୂନ୍ୟରେ କରନ୍ତର କରୁଥିବା ?" ଗୋପାଳ ଗଭୀର ଉଦାସ ଦୃଷ୍ଟିରେ, ସ୍ତ୍ରୀଙ୍କ ମୁହଁକୁ ଚାହିଁ କହିଲେ, "ଏଥିରେ ତୁମର କୌଣସି କ୍ଷତି ହେଉ ନାହିଁ ତ ଅନୁବୋଉ ?"

"କ୍ଷତି ହେଉନି ! ବଡ଼ା ବଡ଼ା କାକଡ କଣା ହେଲଣି । କାଞ୍ଚ କାଞ୍ଚ ତେଲ କଣା ହେଉଛି । ରାତି ଦି'ଟା ନଥାଁ ଧୂଆଁ ବୋଲି କୋଡ଼ି କୋଡ଼ି ଟଙ୍କା ଖରଚ କରୁଚ, କି କ୍ଷତି ହେଉଚି ବୋଲି ବୋଲୁଚ ? ଦିମାସ ହେଲା ପେନ୍‌ସନ୍‌ର ଟଙ୍କାଟ ମତେ ଦେଇନ, ଆସିନ ଆସିନ ବୋଲି ଭଣ୍ଡାଉଚ; କୁଆଡ଼େ ନଥାଁ ଧୂଆଁ କରିଦେଲଣି ନା ଅଛି କହିଲ ?"

"ଏ ମାସର ପେନ୍‌ସନ୍‌ର ସତୁରି ଟଙ୍କା ମୁଁ ଖରଚ କରିଦେଇଛି । କଣ କରିବ ଅନୁବୋଉ, ତୁମେ ତ ମୋର ପ୍ରକୃତି ଜାଣିଛ, ତୁମେ ସେତେ ନିରୋଧ କଲେ ସୁଦ୍ଧା ମୁଁ ସଂଯମର ସୀମା ଭିତରକୁ ଆସିପାରୁ ନାହିଁ । ବୋଧହୁଏ ମରଣ କାଳ ପର୍ଯ୍ୟନ୍ତ ମୋର ଦୁସ୍‌ପ୍ରବୃତ୍ତିଟା ରହିଯିବ । ତୁମେ ଶତ ଚେଷ୍ଟା କରି ମଧ୍ୟ ସଂଶୋଧନ କରିପାରିବ ନାହିଁ । ତୁମେ ତ ଦେଖୁଛ ଅନୁବୋଉ, କେତେ ଘରେ କେତେ ସ୍ୱାମୀ ସ୍ତ୍ରୀ ଭିତରେ, କେତେ ପ୍ରକାର ଅତ୍ୟାଚାର ଚାଲିଯାଉଛି । ଅନେକ ସ୍ତ୍ରୀ ମଧ୍ୟ ନୁଆଇଁ ସବୁ ସହିଯାଇ ସେହି ଦୁର୍ବୃତ୍ତ ସ୍ୱାମୀ ସହ ସଂସାର କରୁଛନ୍ତି । ଏଇ ପେନ୍‌ସନ୍‌ର ଟଙ୍କା କେତୋଟା ତୁମର ବିନା ଅନୁମତିରେ ଖରଚ କରିଦେଇଛି ବୋଲି ତୁମେ କଣ ମତେ କ୍ଷମା ଦେବ ନାହିଁ ?"

"ଏଁ, କି କ୍ଷେମା ଦେବବା ! ମୁଁ କି ବୁଝି କରିବଲେ ମା ! କେତେ କଥା କଲ, ଏ ତିନକୋଡ଼ି ଦଶଟଙ୍କା କଉଡ଼ି କା'କୁ ଦେଲ, କଇବନି ?"

"ବିନା କାରଣରେ କାହାକୁ ହେଲେ ପଇସା-ଟିଏ ଦେଇନାହିଁ, ଅନୁବୋଉ । ଯେଉଁ ଜନକଟା ମୋର ମୃତ ପ୍ରାଣରେ ଜୀବନ ସଞ୍ଚାର କରୁଛି, ମୋର କଥା ମୋହର କଳ୍ପନା ରୂପଯାଇ ଯେଉଁ କାଗଜ ସ୍ତମ୍ଭରେ ପ୍ରକାଶ ପାଉଛି, ସେଗୁଡ଼ିକ ପଢ଼ିବା ଲୋଭରେ ମୁଁ ଏ ଟଙ୍କାଟା ଖରଚ କରି ଦେଉଛି, ଅନୁବୋଉ । ତୁମର ମନେଥିବ ଦର୍ପଣ କାଗଜ ଅର୍ଥାଭାବରୁ ବନ୍ଦ ହେବାକୁ ବସିଥିଲା । ସେ ସମୟରେ ମୁଁ ତାକୁ ଅଳ୍ପତଙ୍କ ପରି ମାତ୍ର ପାଞ୍ଚଟି ଟଙ୍କା ଦେଇ ବଡାସ୍ତୁ କରି ଦେଇଥିଲି । ସେ ପୂର୍ବପରି ପ୍ରତି ସଂଖ୍ୟାରେ ମୋର ଦୁଇ ତିନୋଟା ଲେଖା ପ୍ରକାଶ କରୁଛି । ତାପରେ ଦେଶର ନାନା ସମସ୍ୟାର ସମାଲୋଚନା କରିବା ପତ୍ରିକାଟି ବନ୍ଦ ହୋଇଯିବା କଥା ଶୁଣି ପତ୍ରିକାଟି ପ୍ରତି କୃତଜ୍ଞତାରେ ମୋର ଅନ୍ତର ପୂର୍ଣ୍ଣ ହୋଇଗଲା । ଭାବିଲି, ମୋର ଯଦି ସାମର୍ଥ୍ୟ ଥାନ୍ତା, ତାକୁ ମୁଁ ପୂର୍ଣ୍ଣ ମାତ୍ରାରେ ସାହାଯ୍ୟ କରନ୍ତି । କିନ୍ତୁ ଯେତିକି ପାରିଲି ଯତ୍ ସାମାନ୍ୟ ୪୦ ଟଙ୍କା ମାତ୍ର ତାକୁ ଦେଲି । ଅବଶିଷ୍ଟ ତିରିଶ ଟଙ୍କାରୁ ଦୈନିକ ପତ୍ରିକାର ବାର୍ଷିକ ଦେୟ ବାର ଟଙ୍କା । ଅନେକ ଦିନରୁ ଭାରତୀୟ ସମାଜ ଶାସ୍ତ୍ର ନାମକ ଖଣ୍ଡିଏ ପୁସ୍ତକ ପଢ଼ିବା ଇଚ୍ଛା ଥିଲା, ସେ ଖଣ୍ଡିକ ଦଶଟଙ୍କା ଦେଇ କିଣିଦେଲି । ଲେଖାଲେଖି କରିବା ନିମନ୍ତେ ତିନୋଟି ଟଙ୍କାର କାଗଜ ଆଣିବାକୁ ପଡ଼ିଲା । ଏ ସବୁ ପଠାପଠି ଇତ୍ୟାଦି ନିମନ୍ତେ ଆଉ ପାଞ୍ଚ ଟଙ୍କା ଖରଚ ହେଇଚି । ମୋ ପାଖରେ ଆଉ ଗୋଟିଏ ପଇସା ସୁଦ୍ଧା ନାହିଁ । ଗୋଟାପୂରା ମାସ ପଡ଼ି ରହିଛି, କିପରି ଚଳିବ ବୋଲି ବ୍ୟସ୍ତ ହେଉଛି । ତୁମକୁ ମାଗିବା ଦୁଃସାହସ ମୋର ନାହିଁ । ସତେ ଚନ୍ଦ୍ରାଦେବୀ, ତୁମକୁ ମୁଁ ଏତେ ଭଲ ପାଉଥିଲି ଯେ ନିଜକୁ ମଧ୍ୟ ଭୁଲି ଯାଉଥିଲି । ଏବେଣି ମୋର ସନ୍ଦେହ ହେଉଛି ତୁମକୁ ମୁଁ ଭଲ ପାଉଛି ନା ଭୟ କରୁଛି ?"

"ପୋଡ଼ିଯାଉ ତୁମର ଭଲ ପାଇବା । ତିନକୋଡ଼ି ଦଶ ଟଙ୍କା କଉଡ଼ି କୁଆଡ଼େ ଚୂଲି ପାଉଁଶ କରି ଉଡ଼େଇ ଦେଲ ଯେ ! ଏ ମାସରେ ଆଉ ପଇସାଟିଏ ଦିଆ ହବନି । ହଁ ଲୋ ଝିଅ ମନେ ପଡ଼ିଲା । ସେ କାନିଆ ପଣ୍ଡାକୁ ରଖେଇଥିଲି, ସେ ଘରଟା ଫାଙ୍କା ହେଲା, ଟଙ୍କା କୁଆଡ଼େ ନେଲ ?"

"ଘରଟା ବନ୍ଧିକରି ଟଙ୍କାତ ଆଣିନାହିଁ, ଅଳ୍ପବୋଉ । ନନ୍ଦୁର ସ୍ତ୍ରୀଟା ମରିଗଲା, ତାକୁ ସତ୍କାର କରିବା ନିମନ୍ତେ କେତେ ଖରଚ ହେଇଗଲା । ତାପରେ ତାର ଦୁଇଟା ପିଲା ରହିଛନ୍ତି, ସେ ଦୁଇଟାକୁ ଅନାଥାଶ୍ରମରେ ଛାଡ଼ିବାକୁ ପଡ଼ିଲା, ସେମାନେ ବଞ୍ଚିବା ନିମନ୍ତେ ପଚିଶଟି ଟଙ୍କା ଦେଇଛି ।"

"ଏଇକଥା କହିବାକୁ ମୋର ଘର ବନ୍ଧକ ? ବିନାଶକାଳେ ବିପରୀତ ବୁଦ୍ଧି ବୋଲି ଲୋକେ ବୋଲନ୍ତି । ନଇଲେ କୋଉଠିର ନଣନ୍ଦ ଆପଣା, ତାକୁ ପୋଷାଡ଼ି ଆଣି ଘଣ୍ଟ ବିଘ୍ନ କରେଇଲ, ଏବେ ତାର ପିଲାକୁଟୁମ୍ବ ପୋଷିବାକୁ ମୋ ଘର ବନ୍ଧାହେଲା ?"

"ତୁମର ଘର ତୁମର ଟଙ୍କା ତୁମ ସ୍ୱାମୀର ଆନନ୍ଦ ନିମନ୍ତେ ଯଦି ବ୍ୟୟହୁଏ—"

"ପୋଡ଼ିଯାଉ ଏ ଆନନ୍ଦ । ଯାହା କରିଚ, କରିଚ ଏ ମାସରେ ପେନ୍‌ସେନ୍ ଟଙ୍କାଟା ମତେ ଦେବ ତ ଦେବ, ନଇଲେ ଦେଖିବ ।"

## ସାତ

ଅନ୍ନୁର ଇଚ୍ଛା ପ୍ରକାରେ, ପ୍ରାୟ ଛ'ମାସହେଲା, ସମୁଦାୟ ବିଷୟ, ଡାକନାମ କୋକ, ଭଲନାମ ବିଧୁଭୂଷଣଙ୍କ ନାଁରେ ଲେଖା ହୋଇଗଲାଣି । କୋକର ବୟସ କୋଡ଼ିଏ ଭିତରେ ହେଲେ ସୁଦ୍ଧା ଦେଖିଲାକ୍ଷଣି ଛବିଶି ସତେଇଶି ବର୍ଷର ଯୁବକ ଭଳି ଦେଖାଯାଏ । ବର୍ତ୍ତମାନ କୋକର ମନରେ ମହାଆନନ୍ଦ । ସବୁ ସମ୍ପତ୍ତିର ମାଲିକ ହେଉଅଛନ୍ତି ସେ । ବାର୍ଷିକ ଆୟ ପ୍ରାୟ ପାଞ୍ଚହଜାର । ଏଇ କେତେଦିନ ଭିତରେ କୋକର ପୋଷାକ ପରିଚ୍ଛଦର ଆଡ଼ମ୍ବର ମଧ୍ୟ ଟିକିଏ ବଢ଼ିଯାଇଛି । ଚନ୍ଦ୍ରାଦେବୀ ସମୟେ ସମୟେ ବ୍ୟସ୍ତ ହେଇପଡ଼ୁଛନ୍ତି, ପିଲା ମଣିଷ; କେଜାଣି କାଳେ କିଏ ଶିଖେଇ ବଢେଇ ପଇସା କଢ଼େଇ ନେଇଯିବ ! ସେଥିପାଇଁ ସବୁସ୍ତ ପ୍ରହରୀ ଭଳି, ଧାନ ମୁଗ, ଟଙ୍କା ପଇସା ଗୁଡ଼ାକୁ ଜଗି ବସିଛନ୍ତି ।

କୋକ ଗୋଟା ଥାଳ ପାଖରେ ବସିଥିଲା । କାର୍ତ୍ତିକ ନଥିଲା, ସ୍କୁଲଯାଇଥିଲା, କଣ ଗୋଟିଏ ସଭା ହେଇଥିଲା ବୋଲି ଗୋପାଳଙ୍କ ସାଙ୍ଗରେ । ଚନ୍ଦ୍ରାଦେବୀଙ୍କ ନାତୁଣୀ-ବୋହୂ ଭାତ ବାଢ଼ୁଥିଲେ । ଚନ୍ଦ୍ରଦେବୀ ନାତି, ନାତୁଣୀ-ବୋହୂକୁ ଏକାଠି ଦେଖି ଅତି ଆମୋଦରେ ହସି ହସି ଡାକିଲେ, "ଡାଲି ଆଣେ ଲୋ ମା ! କୋକ ହୁଣ୍ଡାଙ୍କପରି ପାଟିକରି କହିଲା ଡାଲି ଆଣେଲୋ କେତେ ଛଟା ଦେଖେଉଚୁ ! ରାତିରେ ମାଳି ଆଣିଦିଅ । ଶାଢ଼ୀ ଆଣିଦିଅ ବୋଲି କହୁଥିଲୁ । ଏବେ ଲାଜ ଲାଗିଯାଉଛି, ଆଣେ ଡାଲି !"

ଚନ୍ଦ୍ରାଦେବୀ କହିଲେ, କୋକରେ ! ଦୁଲଭ ଦାସର ପୁଅ ବେପାର କଲା ସେ ଦି' ହଜାର ଲାଭ ଆଣିଲା, ତୋ ଠୁ ସେ ଛଅମାସରେ ସାନ—"

"ବେପାର ଖାଲିରେ ହେଇଯିବ କଲେ ଆଈ—?"

ଚନ୍ଦ୍ରାଦେବୀ ଭାବିଲେ କୋକର ବିଷୟ ବୁଦ୍ଧିର ତ ଆଦୌ ଅଭାବନାହିଁ । ସେ ନିଶ୍ଚୟ ଭଲ ଗୃହସ୍ଥଟିଏ ହେବ ।

ସନ୍ଧ୍ୟାବେଳେ ନଈଅଡ଼ୁ ଆସିଲାବେଳକୁ କୋକ କହିଲା, 'ହଇରେ ଦୁଖି, ମୋ ଆଈ ବୋଲୁଚି ବେପାର କରେ ବୋଲି ! କି ବେପାର କରିବା କହିଲୁ—?"

ଦୁଖିକୃଷ୍ଣ ଏ ଭିତରେ ରେଙ୍ଗୁନ୍ ଯାଇ ଛ'ମାସ କାଳ ମୋଟର ଡ୍ରାଇଭରି ଶିଖି ଆସିଛି । ତାବାଦେ ମାସେ ହେଲା ବ୍ରହ୍ମପୁର ସହର ଘୋଟାଯାକ ବୁଲି ସାରିଲାଣି ଡ୍ରାଇଭର କାମ ଗୋଟାଏ ପାଇଁ । ସେ କହିଲା କରିବ ଯଦି ମୋଟର ବେପାର କରିବ । ଏକାଥରକେ ହାଣ୍ଡି ମାଉଁସ, ଆଉ କଣ !

ରାତିରେ ଖାଇବା ପୂର୍ବରୁ ବିସ୍ତର ସମ୍ଭ୍ରାନ୍ତ ଆଈଙ୍କ ପାଖରେ ବସିଗଲା । ହୂଣ୍ଡ କହିଲା, ତମଭଳି ମୋର ଯଦି ଗୋଟେ ଆଈଥାନ୍ତା ସ୍କୁଲଟା ବର୍ଷରେ ରଜା ହେଇଯାନ୍ତି ଆଈ ! ଦେଖ ବ୍ୟବସାୟ କର । ଗୋଟିଏ ମୋଟର ଦିନକୁ ସୁରଥର ବ୍ରହ୍ମପୁରରୁ ସୋରଡ଼ା ଯାଆସ କରିବ । ସ୍କୁଲଶିଜଣ ଯିବେ, ସ୍କୁଲଶିଜଣ ଆସିବେ, ଆଉଥରେ ଯିବେ, ଆଉଥରେ ଆସିବେ,

ଆହୁରି ଅଧିକ ମଧ୍ୟ ବସିପାରନ୍ତି । ମୃତ୍ୟୁଞ୍ଜୟ ଷାଠିଏ ଜ ସନ୍ତୁଷ୍ଟିରେ ବସିବେ । ମୁଁ ଗଣାବନ୍ଧ କହୁଛି, ତିନି ଖାତକ ନଗଦ ପାଞ୍ଚଣ ହାତ ଗଣିଠ । ଏକଥା ଯଦି ଅନ୍ୟଥା ହୁଏ, ମୋର ଏଇ କାନରୁ ଉଠେଇ କାଟିଦେବ ।

ରାଜୀବ କହିଲା, "ତୁମେ ତ ଗାଡ଼ି ଚଳେଇବ, ମୁଁ ଲୋକ ବସେଇବି । ଇମିତି କରିବି ଯେ ଆଉ ସବୁ ଗାଡ଼ିରୁ ଲୋକଗୁଡ଼ାକୁ ପୋଛିଆଣି ଆମ ଗାଡ଼ିରେ ବସେଇ ଦେବି । ଧନକୁ ତେଲ ଖରଚରେ କୋଡ଼ିଏ ଟଙ୍କା ଲାଗିବ ।" ଚନ୍ଦ୍ରା ଟିକିଏ ଚିନ୍ତାକରି କହିଲେ, "ଏତେ ଟଙ୍କାର ନେଖାଯୋଖା ସବୁ କିଏ ରଖିବ – "

ଦୁଃଖି ଜୋରରେ କହିଲା, "କି ବାହ୍ୟାକଥା କହୁଛ ଆଉ ! ତମ କୋକ କଣ ମୂର୍ଖ ହେଉଛି ଯେ ଲେଖା କିଏ ରଖିବ ବୋଲି ଚିନ୍ତାକରୁଛ । ଦେଖିବ, ରହିଥାଅ ପାଞ୍ଚଟା ବର୍ଷ । ଏ ସବୁ ଆଉ ଇମିତି ରହିବନାହିଁ । କୋକ ବ୍ରହ୍ମପୁରରେ ଧନମହଲ ଓ ରତନମହଲ କୋଠା କରିବ । ତମେ ଟଙ୍କା ଗଣି ଗଣି ବାଧ୍ୟ ହେଇଯିବ, ଆଉ !" କୋକ ଅଧପୋଡ଼ା ସିଗ୍ରେଟ ଗୋଟାଏ ଜୋରରେ ଟାଣମାରି ଫିଙ୍ଗିଦେଇ କହିଲା, "ଏଇସାଟାକୁ ଅଧଲାଟାକୁ ମୋ ଆଉ ଦାମ ଟାଣି ଓଟାଣି ହୋଇଛି, ମୁଁ ଆଗ ଟିକିଏ ନିଶ୍ଚିନ୍ତ ହେବି ।" ରାଜୀବ କହିଲା, "ଆଜ୍ଞା ହାତରେ ଜନ ଗଣେଶ ଆଉ ହେଲାବାଦେ ଭୁ ଇଚ୍ଛା ପ୍ରକାରେ ଖରଚ କରିବୁ, ଅଭାବ କଣ ରହିବ ରେ—?"

ସବୁକଥାର ସାରାଂଶ ଠିକ ହେଲା । ପ୍ରଥମେ ଶ୍ରୀଭ ଦେବେ ତିନିହଜାର । ସେଇ ତିନିହଜାରରେ ଗାଡ଼ି ଆସିବ । ଦରକାର ହେଲେ ଆଉ ଦୁଇହଜାର ଦେବେ । ଆଣିକଠୁ ନେବା ଟଙ୍କା ସୁଧମାସରେ ଦୈନିକ ପାଞ୍ଚଣ ଦେଲାବାଦେ ହଜାରେ ହଜାରେ କରି ତିନିହଜାର ଦେବେ ।

ଯଥାସମୟରେ ମୋଟର ଆସିଗଲା ; କିନ୍ତୁ ମୋଟର ଚାଲିବ କିପରି ? ପରମିଟ ଆଣିଦବ କିଏ ? ମୋଟର ଆସିଲା, ଗ୍ୟାରେଜତ ନାହିଁ, ରଖାହେବ କେଉଁଠି ? ପାଞ୍ଚ ଛଅ ହଜାର ଟଙ୍କାର ଦ୍ରବ୍ୟ ନଷ୍ଟ ହେଇଯିବ । ଦୁଃଖି ଆଉ ଶଙ୍କର ଲାଗି ଲାଗି ଗଞ୍ଜାମଜିଲ୍ଲା ଗୋଟାଏ କରିଦେଲେ । ମାସେ କାଳ ଦୁଇ ଜଣ ବ୍ରହ୍ମପୁରରେ ରହିବା, କୋକର ପିଇବା ଆଦି ଖାଇବା ଇତ୍ୟାଦିରେ ପ୍ରାୟ ହଜାରେ ଟଙ୍କେ ଖରଚ ହୋଇସାରିଲାଣି । ଗାଡ଼ି ମୂଲ୍ୟରୁ କମ୍ପାନୀକୁ ଚତୁର୍ଥାଂଶ ମାତ୍ର ଦିଆଯାଇଛି । ଦେଖୁ ଦେଖୁ ଟଙ୍କାତ ଖରଚ ହୋଇଗଲାଣି, ମୂଲ୍ୟ ଦିଆଯିବ କେଉଁଠୁ ? କୋକ କହିଲା, "ହଇରେ ଦୁଃଖି, ଟଙ୍କାତ ସବୁ ଶେଷ ହୋଇଗଲା, କମିତି କରିବା ରେ ?" ଦୁଃଖି ବେପରବାୟ ଭାବରେ କହିଲା "ଆଃ ! ରହିଥାଅ ଆଉ ଆଠଟା ଦିନ, ଗାଡ଼ି ଚାଲିଲେ ଖାଲି ଗଦା ଗଦା ଟଙ୍କା ହୋଇଯିବ ।"

ଆଜିକାର ଆନନ୍ଦ କୋକ ବ୍ରହ୍ମପୁରରେ ରହି ବ୍ୟବସାୟ ଆରମ୍ଭ କରିଦେଲାଣି । ଖାଲି ଟଙ୍କା ରଖିବାକୁ ଅପେକ୍ଷା କରିବା କଥା ରହିଛି ।

ଦୁଃଖି କହିଲା, "ଆଉ କଣ କରିବାରେ କୋକ ! ତୋ ଯୋଗୁଁ ମୁଁ ବଡ଼ ହଇରାଣ ହେଲି । ତିନି ହଜାର ଟଙ୍କା ତ ସବୁ ସରିଲାଣି । ଆଉ ଗାଡ଼ିର ଟଙ୍କା ଦେବା କମିତି ? ସ୍ୱାମୀ ଶଙ୍କର ରାଉଙ୍କଠାରୁ ସବୁ ଲେଖାଲେଖି ହୋଇ ଗାଡ଼ି ଆସିଥିଲା ! ଶଙ୍କର ଗୁରୁ ତ ପ୍ରାଣ ଖାଇଦେଲାଣି । ଏଥିଣି ଆଉ ମାଗିଲେ ମହା ପ୍ରମାଦ ହେବ । ତୋର ମୁଦି ତିନିଟା ଦେଲୁ, ମୋର ମୁଦିଟା ମିଶେଇ ବନ୍ଧା ଦେଲା, ଦୁଇଶ ପଚାଶ ଟଙ୍କା ଆଣିଥିବା ।"

କ୍ରମ କ୍ରମରେ ପରମିଟ୍ ଆସିଲା । କୋକ, ଦୁଃଖି ଗାଁକୁ ଯାଇ କହିଲେ, "ଆଜି ଗାଡ଼ି ଚାଲିଲା ।" ଚନ୍ଦ୍ରାଦେଇ ହସିଦେଇ କହିଲେ, "ଗ୍ରାମଦେବତାଙ୍କ ପାଖରେ ଭୋଗ ସରିଥିଲ, କି ଭୁଲିଗଲରେ ?" ଗାଡ଼ି ଚାଲିଲା । ଦିନ ଗୋଟିଏ ଖିଆପିଆ ହେଲା । ଦୁଃଖି ହେଲା ଡ୍ରାଇଭର, ରାଜୀବ ହେଲା କଣ୍ଡକ୍ଟର, ପ୍ରୋପ୍ରାଇଟର କୋକ । କୋକ କେବେ କପର ଫ୍ରଣ୍ଟ ସିଟ୍‌ରେ ବସିପଡ଼େ । କେତେ ନୂଆଁ ନୂଆଁ ସୁହୃଦ୍ ହେଲେ କୋକର । ଜନ୍ମ ଶତେ ଦେଡ଼ଶହ ପୁଞ୍ଜି ଦୁଃଖି ହଟହଟଲେ ଗୋଲାକ ନେଇ ଦିଅନ୍ତି ଆଉ ଜମାରେଗି ।

ବର୍ତ୍ତମାନ ଗୋପାଳ ନିଜକୁ କାହିଁକି ବଡ଼ ଦୁର୍ବଳ ବୋଧକରୁଛନ୍ତି । ଆଗପରି ଦାଣ୍ଡ ଦୁଆରେ ବସି, ସମାଜ ସଂସ୍କାର ସମ୍ବନ୍ଧରେ ଗାଁର ଲୋକଙ୍କୁ ବୁଝେଇ କହିବା ଉତ୍ସାହ ତାଙ୍କର ଆଉ ନାହିଁ । ବୁଲିଯିବା ବାଟରେ, ସୁମା ବାଉରିର ଆଣ୍ଡିହାତର ଘୋଟଣା ହାତରୁ ତରକାରି ଖାଇବା କୌତୁକ ଗଲାଣି । ଅସ୍ପୃଶ୍ୟତା ନିବାରଣ ସମ୍ବନ୍ଧରେ, ବକ୍ତୃତା କଲାବେଳେ ଚନ୍ଦ୍ରାଙ୍କ ଶୁଚିବାଇର କଥା ସ୍ମରଣ କରି, "ଆପଣଙ୍କ ଘରଆଡ଼ୁ ଅସ୍ପୃଶ୍ୟତା ଉଠିଲାଣିକି ?" ବୋଲି ପ୍ରଶ୍ନ ଶୁଣି ଆଉ ସଭା ସମିତି କରିବାକୁ ଯାଉନାହାନ୍ତି । ବର୍ତ୍ତମାନ୍ ଗୋପାଳଙ୍କ ମନରେ ଏକମାତ୍ର କଳ୍ପନା ରହିଚି । ସେ ଚେଷ୍ଟାକରି ଗୁଡ଼ାଏ ଲେଖି ଯିବେ । ଆଜି ନ ହେଲେ ଦଶବର୍ଷରେ ହୁଏତ ଲୋକେ ତାଙ୍କ ଲେଖା ପଢ଼ି, ସେଇ ଲେଖାର ଆଦର୍ଶରେ ଅନୁପ୍ରାଣିତ ହେବେ । ପୁଣି ଭାବନା ହେଲା, ଲେଖିଲେ କଣ ବା ହେବ, ତାଙ୍କର ତ ଟଙ୍କା ନାହିଁ, ଲେଖାଗୁଡ଼ାକ ପ୍ରକାଶ କରିବେ କିପରି ? ତାଙ୍କର ଭାବନା ସ୍ରୋତରେ ବାଧା ଦେଇ ଘର ଭିତରକୁ ବାହାରି ଆସିଲା କାର୍ତ୍ତିକ ।

"କାର୍ତ୍ତିକ !"

"ଆଜ୍ଞା"

"ଅନେକ ଦିନହେଲା ତୁ ତ ଆଉ ମୋ ପାଖରେ ବସୁନାହୁଁ । ପିତୁଳା ପୂଜା ସମ୍ବନ୍ଧରେ ମୁଁ ଯେଉଁ ପ୍ରବନ୍ଧଟା ଲେଖିଛି ପଢ଼ିଥିବୁ । ସେ ବିଷୟରେ ତୋର ଅଭିମତ କଣ କହିଲୁନାହିଁ ?"

କାର୍ତ୍ତିକ ଚନ୍ଦ୍ରାଦେବୀଙ୍କଠୁ ତାଡ଼ନା ପାଇ ଗୋପାଳଙ୍କ ପାଖରେ ବସି ସାହିତ୍ୟ ଚର୍ଚ୍ଚା କରିପାରୁନାହିଁ । ଏକଥା ଗୋପାଳଙ୍କୁ କହିବାକୁ କାର୍ତ୍ତିକର ଇଚ୍ଛାହେଲେ ମଧ୍ୟ ଗୋପାଳଙ୍କ ବ୍ୟଥାହତ ମୁହଁକୁ ଚାହିଁ, କୌଣସି କଥା ନକହି, ଖାତାଟାକୁ ଲେଉଟେଇ ଦେଇ କହିଲା, 'ଆପଣ ଲେଖିଛନ୍ତି, ହିନ୍ଦୁ ସମାଜରେ ଆଉ କେହି ପିତୁଳା ପୂଜା କରିବେନାହିଁ । ଆଉ ଏହା ମଧ୍ୟ ଲେଖିଛନ୍ତି ଯେ ଏହି ପଇତାର ମଧ୍ୟ କୌଣସି ସାର୍ଥକତା ନାହିଁ । ଆଗ୍ରୁ ଆଜ୍ଞା ! ଆପଣଙ୍କର ସିନା ଜ୍ଞାନଅଛି, ସବୁ ବୁଝି ପାରୁଛନ୍ତି, ପିତୁଳା ଗୁଡ଼ାକ ଖାଲି କାଠ ପଥର ବା ଧାତୁରେ ଗଢ଼ା, ଏ ଗୁଡ଼ାକରେ ଦେବ ଦେବୀଙ୍କର କୌଣସି ଅସ୍ତିତ୍ୱ ନାହିଁ ବୋଲି । ମାତ୍ର ଯେଉଁମାନେ ମୁହୂର୍ତ୍ତେ ହେଉ ଆଖିମୁଦି ଧ୍ୟାନକରି, ଏହି ପିତୁଳା ଭିତରେ ପରମେଶ୍ୱରଙ୍କ ପ୍ରତିମୂର୍ତ୍ତି ଦେଖି ପାରୁଛନ୍ତି, ସେମାନେ ଯଦି ଏହି ପିତୁଳା ପୂଜାଟିକି ଛାଡ଼ିଦେବେ ବଞ୍ଚିବେ କିପରି ?"

"ପଇତା ଆଉ ପିତୁଳାର ହାତରେ ଦେଇ ନାନା ପ୍ରକାର ଭୋଗ ସାମଗ୍ରୀ ଯୋଗାଡ଼ କରି ପୂଜା କରୁ କରୁ ଯେଉଁଦିନ କ୍ଷୁଧାର ଉଦ୍ରେକ ହେବ, ସେ ଦିନ ଶୀଘ୍ର ଥାଳି ମାରିଦେଇ ଭୋଜନରେ ବସିଯିବା ଉଚିତ । ଆଉ ସେହିମାନେହିଁ ଈଶ୍ୱର ସର୍ବସ୍ୱ ବୋଲି ତୋର ବିଶ୍ୱାସ ହେଉଛି, କାର୍ତ୍ତିକ ?"

କାର୍ତ୍ତିକ କହିଲା, "ଆଜ୍ଞା, ଆପଣଙ୍କଠୁ ଶୁଣି ଶୁଣି ସାହାସ ପାଇଁ କହି ପକାଉଛି । ମୋର ବିଶ୍ୱାସରେ କିଛି କଥା ନାହିଁ । ଆପଣଙ୍କର ବିଶ୍ୱାସହିଁ ମୋର ବିଶ୍ୱାସ । ତୁମର ବିଶ୍ୱାସରେ ଆଉ ପାଞ୍ଚଜଣଙ୍କର ବିଶ୍ୱାସ ହେବ ବୋଲି ମୋର ଆଶାନାହିଁ । ଦେଖନ୍ତୁ ମୁଁ ଆପଣଙ୍କ ପାଖରେ ରହି ରହି ଅଭ୍ୟାସ ବଳରେ କୌଣସି କଥାକୁ ଭୟ କରୁନାହିଁ । ମାତ୍ର ଯେଉଁମାନେ ଏଇ ପଇତା ସୂତାର ଗଣ୍ଠିକୁ ବ୍ରହ୍ମଗଣ୍ଠି ବୋଲି ବିଶ୍ୱାସ କରି, ଭୂତପ୍ରେତରୁ ଭୟରୁ ରକ୍ଷା ପାଉଛନ୍ତି, ଅନ୍ୟମାନଙ୍କ ମନରେ ଦୃଢ଼ ବିଶ୍ୱାସ ଜନ୍ମେଇ ପାରୁଛନ୍ତି, ସେମାନେ ପଇତା ଫିଙ୍ଗିଦେଲେ ଭୂତ ପ୍ରେତ ହୋଇ ବୁଲିବେ ବୋଲି ମୋର ଭୟ ହେଉଛି ।" କାର୍ତ୍ତିକର କଥା ଶୁଣି ଗୋପାଳ ଆଶାପ୍ତୀ ହୋଇ କହିଲେ "କେଉଁଟା ଠିକ୍ କେଉଁଟା ଭୁଲ୍ ତୁ ଜଣେ ଯେତେବେଳେ ବୁଝିଲୁ, ମୋର ଯଦି ଆର୍ଥିକ କ୍ଷମତା ଥାନ୍ତା, ତୋଭଳି ଆଉ ପାଞ୍ଚଜଣଙ୍କୁ ତ ଏଇ ପ୍ରେରଣା ଦେଇପାରିଥାନ୍ତି । ସେଇ ପାଞ୍ଚଜଣ ଆଉ ପାଞ୍ଚ ପାଞ୍ଚ ଜଣଙ୍କୁ ଯଦି ବୁଝେଇ

ଅନ୍ଧବିଶ୍ୱାସରୁ ନିବୃତ୍ତ କରେଇ ସତ୍ୟ ମାର୍ଗକୁ ଆଣି ପାରନ୍ତେ, ତେବେ ତ ଦେଶ ଅନେକ ଆଗେଇ ଯାଆନ୍ତାରେ କାର୍ତ୍ତିକ !"

"ସମସ୍ତେ ଯଦି ସମାନ ଭାବରେ ବୁଝିଥାନ୍ତେ ଆମ ଦେଶରେ ଅଜ୍ଞାନ ବୋଲି ଗୋଟିଏ କେହି ନଥାନ୍ତେ । ଆଜି ଅଧମର ଅପରାଧ କ୍ଷମା କରିବେ, ଆପଣ ବୁଝିଥିବେ ଆମ ମାଁଙ୍କୁ ଆଜି କେଉଁ ପ୍ରକାର କରି କେଉଁ ଭାବରେ ଏକଥା ବୁଝେଇ ହେବନାହିଁ । ମାଁଙ୍କ କାଲି ଦଣ୍ଡିଗୋସେଇଁଙ୍କୁ ଆରାଧନା କରୁଥିଲେ ଆମ ଲୋକ ବାବୁଙ୍କର ଋଣ ଖଣ୍ଡନ ହବବୋଲି । ବୁଝିବା ଲୋକେ ଶହେକେ କେତେ ଥିବେ ସେକଥା ମୋଠୁ ଆପଣ ଆହୁରି ଜାଣୁଥିବେ । ମୁଁ ତ ଆପଣଙ୍କ ପାଖରୁ ଯାହା କିଛି ପାଇଛି, ମୁଁ ଆଉ ବେଶି କଣ କହିବି ?"

ଗୋପାଳ କାର୍ତ୍ତିକର କଥା ଶୁଣି ନୀରବରେ ଚିନ୍ତା କରୁଥିଲେ । କାର୍ତ୍ତିକ ତାର ଗେଞ୍ଜି ପକେଟରୁ କାଗଜ ଖଣ୍ଡେ ବାହାରକରି କହିଲା, "ଆମନ୍ତ୍ରଣ ପତ୍ରଟା ଆଜି, ନଈବନ୍ଧର ପାଠାଗାରର; ଆପଣ ଯାଇଥିଲେ ଦ୍ୱାରଉଦ୍‌ଘାଟନ କରିବାକୁ, ମନେ ନାହିଁକି ଆଜି ତିନି ବର୍ଷ ହେଇଗଲାଣି । ସଭା କରୁଛନ୍ତି ସେ ଡାକିଛନ୍ତି । ଅନେକ ଦିନହେଲା, କେଉଁଠିକି ଯାଇନାହାନ୍ତି, ଯାଆନ୍ତୁ ଆଜି ।" କାର୍ତ୍ତିକ ଗୋପାଳଙ୍କ ଚିନ୍ତା ବିବର୍ଣ୍ଣ ମୁହଁକୁ ଚାହିଁ ଆଉ ବିଶେଷ କିଛି ନକହି ଚାଲିଗଲା । ପରେ ଗୋପାଳ ଉଠିପଡ଼ି ଘରକାବାଟେ ଚାହିଁଲେ ବାହାରକୁ । ସନ୍ଧ୍ୟା ହେବାକୁ ଆଉ ବେଶି ସମୟ ନାହିଁ । ନଈବନ୍ଧ ଏଠିକି ପ୍ରାୟ ତିନିମାଇଲ । ଭାବନା ଆସିଲା ଚାଲି ଚାଲି ଯାଇପାରିବେକି ନାହିଁ, ବଳଦଗାଡ଼ି ଖଣ୍ଡେ ବ୍ୟବସ୍ଥା କଲେ ହୁଅନ୍ତା; କିନ୍ତୁ ହାତରେ ପଇସା ନାହିଁ, ପେନ୍‌ସନର ଟଙ୍କାଟା ଆସୁ ଆସୁ ଚନ୍ଦ୍ରାଦେବୀ ନେଇ ଯାଇଛନ୍ତି । ଥରେ ବିଷ୍ଣୁପୁରକୁ ଗଲାବେଳେ ବଳଦ ଗାଡ଼ିଟାରେ ଯାଇଥିଲେ । ତାର ଭଡ଼ାଟା ଦେଲାବେଳକୁ ଚନ୍ଦ୍ରାଦେବୀ କେତେ ନିଷ୍ଠୁର କଥା କହିଥିଲେ । ଆଜି ପୁଣି ସେ ସେଇ କଥା କହିବାକୁ ଦିବେ କିପରି ? ଯେଉଁ ଛି ! ସେ ଆଉ ଭାବିପାରିଲେ ନାହିଁ । ଅସ୍ଥିର ଭାବରେ ଯାଇ ଚଉକିରେ ବସି ପଡ଼ିଲେ । ମନେ ପଡ଼ିଲା ନୂତନ ଜୀବନର ସେଇ କେତେ ଆଦର, କେତେ ସ୍ନେହ ଯତ୍ନ ! ଏଇ ଚନ୍ଦ୍ରାଙ୍କୁ ସେ କେତେ ସ୍ନେହ ଦେଇଛନ୍ତି ! ନା ଆଉ ଭାବିବ ନାହିଁ, ଭାବିଲେ । ସେ ଉଠିପଡ଼ି ନଈବନ୍ଧ ଯିବାକୁ ବାହାରି ପଡ଼ିଲେ ।

ବାଡ଼ି ବାରଣ୍ଡାରେ ବସି ଚନ୍ଦ୍ରାଦେବୀ ମନେ ମନେ ହିସାବ କରୁଥିଲେ: "ବାଜିଆ ନେଇଥିଲା ମୂଳଧନ ଆଠକୋଡ଼ି । କଳନ୍ତର ହେଲା ତିନିକୋଡ଼ି ଦଶ । ପୋଡ଼ାମୁହାଁ ପାଞ୍ଚବରଷ ହେଲା ନେଇଥିଲା । ଗାଁ ପଣ୍ଡା ନେଇଥିଲା ଦ'କୋଡ଼ି । କଳନ୍ତର ହେଲା ଦ'କୋଡ଼ି ପାଞ୍ଚ । ଆଉରି ଦ'ଟଙ୍କା ଛ'ଅଣା କି ସାତଅଣା ହେଇଥାନ୍ତା ଦେଲାନି । ଲୋକ ଆଣିବା ଟଙ୍କା ଗଣିଲେ । ଭାବିଲେ ମାସୁଟେ ହେଇନି, ନିତି ଚାରିକୋଡ଼ି, ତିନିକୋଡ଼ି ଆଣୁଛି ! ଆହୁରି ଆଣିବ ବୋଲି ଦୁଃଖକଷ୍ଟ କହୁଥିଲା । ମା'ହାପୁରୁ ମା' ଗ୍ରାମ ଦେବତୀ, ଦଣ୍ଡିଗୋସେଇଁ । ମୋ ଲୋକକୁ କମିତି ଭଲ କରିଥିବେ । ଲୋକଟା ଏବେ ଆଠଦିନ ହେଲା ଖାଲି ବାହାଘରେ ଦୋଉଛି । ହେ ମା ଶୀତଳେଇ—"

ବାରଣ୍ଡା ପାଖକୁ ଆସି ଗୋପାଳ ଡାକିଲେ, "ଅନୁବୋଉ ! ମୁଁ ଯାଉଛି ନଈବନ୍ଧ । ସେଠିରେ ପାଠାଗାର ସଭ୍ୟଗଣ କଣ ଗୋଟାଏ ସଭା କରୁଛନ୍ତି । ବାରମ୍ବାରକରି ଆସିବାକୁ କହିଛନ୍ତି—"

"ଯିବ ଯଦି ଯିବତ, ଟଙ୍କାପଇସା ମୋ ହାତରେ କିଛି ନାହିଁ—"

"ତୁମକୁ ମୁଁ ଟଙ୍କା ମାଗି ଆସିନାହିଁ ଅନୁବୋଉ, କହିବାକୁ ଆସିଛି । ରାତିରେ ତ ଆଜ ସେଠୁ ଫେରି ଆସିପାରିବି ନାହିଁ । ଦେହଟା ମଧ୍ୟ ସେତେ ଭଲ ନାହିଁ । କାର୍ତ୍ତିକକୁ କହିବ, ମୋ ପାଇଁ ରୁଟି ଦିଖଣ୍ଡ ନେଇ ଦେବ । ମୋର ମନେପଡ଼ୁଛି, ଅନୁବୋଉ, ତୁମ ହାତରେ ବହୁତ ଭଲ ଜିନିସ ମତେ ଖୁଆଇ–

ଥିଲ ।" ଆବେଗରେ ଅବରୁଦ୍ଧ ହୋଇଗଲା ଗୋପାଳଙ୍କ ଗଳା । ସେ ଆଉ କିଛି କହିପାରିଲେ ନାହିଁ । ମୁହଁ ଫେରେଇ ଆଖି ପୋଛି ଚାଲିଗଲେ ଆଗକୁ । ପାହାଚ ତଳୁ ପଛକୁ ନଚାହିଁ କହିଲେ, "ତାକୁ କହିଦବ ବେଶି ଗୋଳ ନକରି ଟିକିଏ ଚଞ୍ଚଳ ଯିବ । ଆଜିତ ହାଟବାର । ଲୋକ ଯାଆସ କରୁଛନ୍ତି । ହଁ କହିବ, ଅଧିକା ଦିଖଣ୍ଡ ରୁଟି ନେଇଥିବ; ଅନ୍ୟମାନେ ଥିବେ ।" ଚନ୍ଦ୍ରାଙ୍କ ଉତ୍ତରକୁ ଅପେକ୍ଷା ନକରି ଚାଲିଗଲେ ଗୋପାଳ ।

କାର୍ତ୍ତିକ ଦୁଆର ସେ ପାଖରେ ରହି ଶୁଣୁଥିଲା, ବୋଧହୁଏ । ଆସ୍ତେ ଆସ୍ତେ ଆସି ପଚାରିଲା, "ଆଜ୍ଞା କୁଆଡେ଼ ଗଲେକି ?" "ଗଲେ ଚୁଲିକି ! ଷାଠିଏ ବର୍ଷର ବୁଢ଼ାଟେ ହେଲେଣି । ଏତିକ ଜାଣୁ ନାହାଁନ୍ତି କଅଁ ? ଗଲିଓକଲୁ କାଇକିରି ଯାଉଛନ୍ତି, ଯାଉଛି ନଈବନ୍ଦ । ରୁଟି ତିଆରି କରି ପଠେଇଦବ । ଆଉଥରେ ଅଧିକା ଦିଖଣ୍ଡ ଦିଆହବ । ଯୋଉ ବୁଦ୍ଧି ଧରିଲେଣି ! ଆପଣା ପେଟକୁ ତ ଠିକଣା ନାହିଁ । ଆଉଥରେ ଅଧିକା ।" କାର୍ତ୍ତିକ ଚନ୍ଦ୍ରାଙ୍କ କଥାରେ ପ୍ରତିଧ୍ୱନି କରି କହିଲା, "ନାଇଁ ଆଉଁ କଣଁ ଆଜ୍ଞାଁ ! ନିଜଁ ପେଟକୁଁ ତଁ ଠିକଣାଁ ନାଇଁ । ଆଉଁଥରେ ଅଧିକାଁ ଦିଆହବଁ ? କି କଥାହେଁ ?"

"ଏଇକ୍ଷଣି ସେ ଲୋକ ଆସିବ । ସେ ଲୋକର ନନାଙ୍କୁ ଜର ହୋଇଚି ଯେ, ଶୋଇଛନ୍ତି । ରାନ୍ଧିକରି ଥୋଇଦେ ! ଯିବୁପଛ ଯା ।"

"ଚୁଲିଁ ଜାଳିଁ ଦେଲିଣି ଯେ, ଗହମ ଚୂନାତ ଅଳପ ଅଛି—"

"ହଁରେ କାର୍ତ୍ତିକ, ପୁଷ୍ଟି ନ ହେଲେ ତ ସେ ଲୋକ ଘର ଖାଇଦେବ । ବାବୁଙ୍କ ପାଇଁ ଭାତ ଡାଲି ନେଇଦେ ।" କାର୍ତ୍ତିକ ମନ ବୁଝିବାକୁ ପଚାରିଲା, "ମୋଟା ଉଷୁନା ଭାତ ହୋଇଚି ଯେ !" ଚନ୍ଦ୍ରା କହିଲେ, "ଉଷୁନା ଭାତ ଦିହକୁ ପଥିରେ; ଜାଣୁନୁ ?"

"ହଁ ଆଜ୍ଞାଁ, ବାବୁ ଆଉ ଏକାଳେ ପୁଷ୍ଟି ଖାଇବେ ! ଲୋକ ବାବୁ ଖାଆନ୍ତୁ ।" କାର୍ତ୍ତିକ ଚାଲିଗଲା ପରେ ଚନ୍ଦ୍ରାଦେବୀ ଭାବିଲେ ; ସେଦିନ ଲୋକର ନନା କହିଥିଲେ, ପୋଥି ଦେଖିଲେ ଯେ, ଦୁଇଶ ଟଙ୍କା ହେଲ ବୋଲି ! କେଜାଣି କୁଆଡେ଼ ନେଲେ, ପଇସାଟିଏ ତ ଦେଖେଇ ନାହାଁନ୍ତି । ଖାଇକି ଦେଇପକେଇଥିବେ । ବୁଢାଟେ ହେଲେଣି । ଯାଙ୍କର ବୁଦ୍ଧି ନାଇଁ ଯେ ଯାଙ୍କୁ କେତେ କହିଥିବ । ଘର ଟଙ୍କା ପରକୁ ଦେଇ ଦିନଗୋଡ଼ ଖାଇକି ଖଟୁଛନ୍ତି । କାର୍ତ୍ତିକ ବାରଣ୍ଡା ସେ ପାଖରୁ ପଚାରିଲା, "କି'ତରକାରି ହେବ ଆଜ୍ଞା !"

"ବାବୁଙ୍କ ପାଇଁ ବାଇଗଣ ତରକାରି କରେ—"

ଆଉଁ ?

"ଲୋକ ତ ବାଇଗଣ ଛୁଉଁନି । ତାପେଇଁ ଆଳୁ ଟିକିଏ ତରକାରି କରିବୁ ।"

"ବାଇଁଗଣଁ ଗୁଡାକଁ ଖାଲିଁ ଭେଜାଆଁ ହୋଇଚିଁ, ସେଥିରେଁ ଆଳୁଁ ପଡ଼ିବକିଁ ଆଜ୍ଞାଁ ?"

"ଆଳୁ ଅଛିକରେ, ଖାଲି ବାଇଗଣ ରାନ୍ଧିଦେ ।"

"ଆଜ୍ଞା ଘିଅ ଟିକିଏ ଦିଅ, ଫୁଟଣା ହବ ।"

"ତେଲ ଫୁଟଣା କରେ—"

"ଆଳୁରେ ତେଲ ପଡ଼ିବ ?"

"ଆହା କେତେ ଗଜଗଜ କରୁଚୁରେ, ଆଳୁ ଥାଉ ମୁଁ ରାନ୍ଧିବି । ତୋଇ ତୁ ଯିବୁ ପଛ ଯା ।"

କିଏ କେତେ ଟଙ୍କା ନେଇଛି, କେତେ ମୂଳ, କେତେ କଳନ୍ତର ସମୁଦାୟ ଟଙ୍କା ମିଶି କେତେ, ଚନ୍ଦ୍ରା ତାରି ଗୋଟେ ମୋଟାମୋଟି ହିସାବ କରୁଥିଲେ । କାର୍ତ୍ତିକ ପୁଣି ପଚାରିଲା, "ବାବୁଙ୍କ ସକାଳେ ଦୁଧ ନେଇବ କି ଆଜ୍ଞା ?"

"ସେ ଲୋକର ନନା ଜରରେ ଶୋଇଛନ୍ତି, ପିଇବେ । ଦୁଧ ଲୋଟେ ଅଛିରେ !"

## ଆଠ

ଅନନ୍ତର କାନ୍ଧ ଉପରେ ଭରା ଦେଇ ଗୋପାଳ ଘର ଭିତରକୁ ଆସି ଚଉକିରେ ବସିପଡ଼ିବାକୁ ଉଦ୍ୟତ ହେଉଛନ୍ତି, ଚନ୍ଦ୍ରାଦେବୀ ଘରଆଡ଼ୁ ଆସି କହିଲେ, "ମୋ ଘରକୁ ଆସିବାକୁ ମନାକଲି ଜର !

ଆଉଥରେ ଅଲଜୁକ ଘର ଧାଇଁ ଆସିଛୁ ।" ଅନନ୍ତ ସସ୍ମିତ ଦୃଷ୍ଟିରେ ଚାହିଁ କହିଲା, "ମୁଁ ତ ସେ ଦିନଠୁ ଆସି ନଥିଲି । ଆଜି ଭାଇନା ସେଆଡ଼ୁ ଆସୁ ଆସୁ ଗୋଖରା ପାଖରେ ପଡ଼ିଗଲେ ଯେ, ହାତଟା ଧରିନେଇ ଆସିଲି । କେମିତି ଲାଗୁଛି ଭାଇନା ?"

"ଅନେକ ଦିନ ହେଲା ବଡ଼ ଦୁର୍ବଳ ଲାଗୁଛି—"

"ବନ୍ଧୁକୁ ପଠେଇ ଦେଇଥିଲି । ରାମ କବିରାଜଙ୍କୁ ଡାକି ଆଣିବାକୁ ।"

"ତମକୁ କିଏ କହିଲାମ, ବଇଦ କବିରାଜ ଏତେ ଲୋକଙ୍କୁ ମୋ ଘରକୁ ଡାକି ଆଣିବାକୁ ! ଭାଗକୁ ଭାଗ ପାଞ୍ଚ ଭାଗ ଔଷଧ ହେଲାଣି । ଯୋଉଠେ ଯାହାଥିଲା ସବୁ ସରିଲାଣି ।" ଚିନ୍ତାଙ୍କ କଥା ନ ସରୁଣୁ ବନ୍ଧୁ ସହିତ କବିରାଜ ଆସି ଉପସ୍ଥିତ ହୋଇଗଲେ । ଅନନ୍ତ କବିରାଜଙ୍କୁ କହିଲା, "ହଠାତ୍ ପଡ଼ିଯିବାରୁ ବୋଧହୁଏ ଆଘାତ ଲାଗିଯାଇଛି । କବିରାଜ ନାଡ଼ି ଦେଖି, ମୁଖ, ଆଖି ପରୀକ୍ଷା କରି କହିଲେ, "ବାତ ପ୍ରବଳ ହେବାଯୋଗୁଁ ମସ୍ତିଷ୍କ ବିଘୂର୍ଣ୍ଣିତ ହେଉଛି । ରୋଗୀଙ୍କୁ ପ୍ରଚୁର ପରିମାଣ ଦୁଗ୍ଧ ଘୃତାଦି ସ୍ନିଗ୍ଧ ଦ୍ରବ୍ୟ ଖାଇବାକୁ ଦେବାକୁ ହେବ । ସେ କୌଣସି ବାତନାଶକ ଶାସ୍ତ୍ରୀୟ ତୈଳ ପାଦରେ ମଥାରେ ମାଲିସ କରିବାକୁ ହେବ ।"

ଚିନ୍ତା କହିଲେ, "ଆହା ! ଘିଅ, ଦୁଧ ଖାଉ ନାହାଁନ୍ତି କିଆଁ ? ସେ ଖାଉ ନାହାଁନ୍ତି ତ ଆଉ କିଏ ଖାଉଛି । ଗଲାମାସରେ ଅଜା ଖାଇବେ ବୋଲି, କୋଳ ମୋର ପେଡ଼ି ପେଡ଼ି କରି ଛ' ପେଡ଼ି ଔଷଧ, ଶହେଟଙ୍କା ଦେଇ ଆଣିଲି । କୋଳ ମୋର ଆଉରି କେତେ ଔଷଧ ଆଣିଲାଣି ।"

କବିରାଜ କହିଲେ, "କଷ୍ଟହେଲେ ରସାୟନ ଔଷଧର ବ୍ୟବସ୍ଥା କଲେ ଭଲ ହୁଅନ୍ତା, ଔଷଧଟା ଟିକିଏ ମୂଲ୍ୟବାନ । ଟଙ୍କା ଖରଚ ହେବ—"

ଚିନ୍ତା କଥା ଉପରେ ବାଧାଦେଇ କହିଲେ, "ନାଇଁ ନାଇଁ ବଇଦ ଔଷଧ ଆଉ ଦିଆହବ ନାଇଁ । ଗଲା ମାସରେ ଶଙ୍କର କବିରାଜଙ୍କୁ ପଞ୍ଚାଶେଟଙ୍କା ଦେଇଛୁ, କିଛି ଔଷଧ ଦେଲାନି । ବଇଦଗୁଡ଼ାକ ଖାଲି ଲୁଚ୍ଚା ଠକ । ଯବପରା ଘ'ହେ କବିରାଜେ, ତାଙ୍କ ଦିହ ଇମିତି ସବୁଦିନେ ହୋଉଚି । ଶୋଇପଡ଼ିଲେ ଭଲା ହେଇଯାଉଛି । ଏ ବନ୍ଧୁ ! ତୋ ନନା, ତୁ, ସବୁ ଏ ଘରୁ ଯ, କେଁ କେଁ ହୁଅନ ।"

ଘରଭିତରେ ଗହଳି ହେବା ଶୁଣି କାର୍ତ୍ତିକ ବେଢ଼େଇ ଘରୁ ଆସି ଦେଖିଲା । ଅନନ୍ତ, ବନ୍ଧୁ, ରାମ କର କବିରାଜ ଚାଲି ଯାଉଛନ୍ତି । ଗୋପାଳ ରୋଗୀଙ୍କ ପରି ଯନ୍ତ୍ରଣା ସୂଚକ ମୁଖଭଙ୍ଗି କରି ବସିଛନ୍ତି ।

କାର୍ତ୍ତିକ ଆତୁର ହୋଇ ଗୋପାଳଙ୍କ ପାଖକୁ ଆସି ଅବସ୍ଥା ଦେଖି ଖାଲି ଚାହିଁ ରହିଲା । "ବିଶେଷ କଷ୍ଟ ହେଉନାହିଁ କାର୍ତ୍ତିକ ! ଦେହଟା ଭଲ ଲାଗୁନାହିଁ, କାଲିକି ଭଲ ହେଇଯିବ ; କିନ୍ତୁ ବଡ଼ ଦୁଃଖର କଥା କାର୍ତ୍ତିକ, ପାଠାଗାରରେ ମୋର ଚଷମାଟା ରହିଗଲା । ଚଷମା ନ ହେଲେ ତ ମୁଁ ମୁହୂର୍ତ୍ତେ ଚଳିପାରିବି ନାହିଁ । ସେଥିପାଇଁ ଦେହର ପୀଡ଼ା କଥା ଭୁଲି ଖାଲି ସେଇ ଚଷମା କଥା ଭାବୁଛି । ସେଥର ଉତ୍କଳ ସମ୍ମିଳନୀରେ ଯୋଗ ଦେବାକୁ କଟକ ଯାଇଥିଲି, ତିରିଶି ଟଙ୍କା ଦେଇ ଚଷମାଟା ଆଣିଥିଲି—" ଚିନ୍ତା ଚମକି ପଡ଼ି କହିଲେ, "ଦଶଟା ବରଷ ହେଇନି, ଏ କୋଡ଼ିଏ ଦଶଟଙ୍କା ଦେଇ ଆଣିଥିଲ ସେ କୋଉଠେ ପକେଇ ଦେଇ ପକେଇ ଆସିଲ ? ମୁଁ କହୁନି, ପାପଦଶା ପଡ଼ିଲାଣି, ସ୍ୱାମୀଙ୍କର ଆଉ ଭଲ ବୁଦ୍ଧି ହବନି । ଯାଉ ଗଲା ଯଦି ପାପ ଗଲା, ଯେତେ ଗହଣା ତେଲ ସରୁଥିଲା ସେତିକି ରହିଲା ।"

କାର୍ତ୍ତିକ କହିଲା, "ଯିବି କି ଆଜ୍ଞା, ଥରେ ପାଠାଗାରଟା ଦେଖି ଦେଇ ଆସିବି ।"

"ଦେଖେ, ଚେଷ୍ଟାକରେ, କିନ୍ତୁ ଥିବବୋଲି ବିଶ୍ୱାସ ହେଉନାହିଁ ।"

"ଥିଲେ ତ ଭଲ ହେଲା, ନଥିଲେ ସେଆଡ଼ୁ ସେଆଡ଼ୁ ବ୍ରହ୍ମପୁରି ଯାଇ ଚଷମା ଗୋଟେ ନେଇ ଆସିବି କି ଆଜ୍ଞା !" "ଶୁଣମ ଏ ପୋଡ଼ାମୁହାଁର କଥା, ଟଙ୍କାଗୁଡ଼ାକ ଏଇଠେ ଥୁଆହୋଇଚି ! ଯା ଯା, ତୁ ଏଇଠୁ ଗଲୁ !"

କାର୍ତ୍ତିକ ଚାଲିଗଲା ପରେ ଗୋପାଳ ଡାକିଲେ ଅନୁବୋଉ, ଗୋଡ଼ଦହଟା କାହିଁକି ବଡ଼ ଖରଖର ଲାଗୁଛି—

ସେଦିନ ଦଣ୍ଡି ଗୋସେଇଁ କି ଯାହା ଗୁଣିଚ, ତାର ଫଳ ପାଉଚ । ସଂସାରେ ସବୁ ମିଛ, ଦଣ୍ଡି ମହାପୁରୁଷଙ୍କ ସତ ! ଯାହା ହେଲାଣି ହେଲାଣି, ଗାଧୋଇ ପାଧୋଇ ଗୋଟିଏ ଗୋଟିଏ ଯାଇ ଗାଁ ଠାକୁରାଣୀ ପାଖରେ ମୁଣ୍ଡିଆ ମାରି ଆସ । ଦେଖିବ ରାତି ପାହିଲା ବେଳକୁ ସବୁ ରୋଗ ବଇରାଗ ଛାଡ଼ିଯିବ ।

"ତୁମ କଥା ଶୁଣି ମୁଁ ହସିବି କି କାନ୍ଦିବି ସ୍ଥିର କରିପାରୁନାହିଁ, ଅନୁବୋଉ ! ଓଡ଼ିଶାର କାହିଁକି ସାରା ଭାରତରେ ଯେତେ ନରନାରୀ ଅଛନ୍ତି, ସମସ୍ତେ ପିତୁଳା ପୂଜା ଛାଡ଼, ସତ୍ୟରେ ବିଶ୍ୱାସ ରଖନ୍ତୁ ବୋଲି ଲେଖୁଛି ବଡ଼ ବଡ଼ ଗ୍ରନ୍ଥ । ମୌଖିକ ଭାବରେ ମଧ୍ୟ ପ୍ରଚାର କରୁଛି ସମସ୍ତେ ଏକେଶ୍ୱରବାଦୀ ହୁଅନ୍ତୁ ବୋଲି । ସେଇ ମୁଁ ଆଜି ତୁମର ଅମୂଲ୍ୟ ଉପଦେଶରେ ଯିବି ଗାଁ ଠାକୁରାଣୀଙ୍କ ପାଖକୁ—'

'ଏଁ ନ ଗଲେ ମୋର ବଡ଼ ହାନି ହୋଇଯିବ । ତମ ହାତ ଗୋଡ ଧରି ତମେ ଫଳ ପାଇବ ।'

କାର୍ତ୍ତିକ ହଠାତ୍ ଆସି କହିଲା, "ମାଁ, ଏ ଆଡ଼େଁ ଆସନ୍ତୁ । କୋଉଁ ବାବୁଁ ବୋହୂମାନଙ୍କଠୁଁ ସୁନା ହାରଟାଁ ନେଇଁଗଲେଁ ଯେଁ ବୋହୂ ମାଁ ଭେଁ ଭେଁ ହେଇଁ କାନ୍ଦୁଛନ୍ତି ।"

"କେତେ ମିଛକଥା କହୁଚୁରେ ! ଏଁ ଲୋକ ତ କାଲିଠୁ ଘରକୁ ଆସିନି, ସେ କାହିଁକିରେ ହାର ନେବ ?" "ମୁଁ ମିଛଁ କହୁନିଁ ଆଜ୍ଞାଁ, ଆସନ୍ତୁଁ ଦେଖିବେ ।"

"ଆହା, କି ଜଳନ୍ତା ବୁଦ୍ଧିରେ ତୋର ? ଏ ମୋ ଲୋକତ ନିତି ଶହେ ଟଙ୍କା ଆଣି ମୋ ହାତରେ ଦେଉଚ । ସେ କାହିଁକରେ ହାର ନବ ?"

ଅଗଣାରେ ଜୋର ଶବ୍ଦ ଶୁଣି ଚନ୍ଦ୍ରାଦେବୀ କେଜାଣି କଣ ଭାବି ଚାଲିଗଲେ । କାର୍ତ୍ତିକ କହିଲା, "ଆଜ୍ଞା ! କଣଁ କହିବିଁ ପେଁଟ ଭିତରେଁ ଅନେଁକ କଥାଁ ରହିଛିଁ । ଆମଁ ଲୋକଁ ବାବୁଁ ମଟରେଁ ବେପ୍ୟାରେଁ କରୁଁଛନ୍ତିଁ ଯେ—"

"କଣ କହିଲୁ କାର୍ତ୍ତିକ, ମୋଟର ବେପାର କରୁଛି ଲୋକ ଟଙ୍କା ପାଇଲା କୋଉଠୁ ?"

"ହଁ ଆଜ୍ଞାଁ ଆମଁ ମାଁ ବୋଲୁଛନ୍ତିଁ ମୋଁ ଲୋକଁ ଶହଁ ଶହଁ ଆଣୁଚିଁ । ସେଆଡ଼େଁ ମଟରେଁ ଟଙ୍କା ଦିଆଁ ହୋଇନି । ପାନଁ ଘର ପୁଅ ଦୁଇଁ, ପଧାନଁ ଘରଁ ପୁଅଁ ରାଜଆଁ ମିଶିଛନ୍ତି । ମଦଁ ମାଉଁସ ଯେଉଁଠାଁ ଚାଲିଛିଁ—"

"ଲୋକ ଏତେଗୁଡ଼ାଏ ଟଙ୍କା କୋଉଠୁ ପାଇଲା କାର୍ତ୍ତିକ ?"

"ତାଙ୍କ ଆଇ ତ ତାଙ୍କର—ହୋଉ ଦିଅନ୍ତୁ, ମୁଁ ଯାଉଚ ଆଜ୍ଞା ଚଷମା ଖୋଜ ।"

ଚନ୍ଦ୍ରାଦେବୀ ଦେଖିଲେ କାର୍ତ୍ତିକର କଥା ସତ । ଲୋକ ପଛକୁ ନଚାହିଁ ଚାଲିଯାଉଛି । ସେ ହତବୁଦ୍ଧି ହୋଇ ଲୋକକୁ ଡାକି ନ ପାରି ଚାଲିଗଲେ ଲୋକର ଶୋଇବା ଘରକୁ । ନୂଆଁ ବୋହୂଟା ତଳେ ବସି ଛଟପଟ ହେଉଚି । ଆଠମାସ ଗର୍ଭ, ତିନିଦିନ ହେଲା ହୋଇଛି ବେଦନା । ଆଈଙ୍କୁ ଦେଖି କାନ୍ଦି କାନ୍ଦି କହିଲା "ଭୁତପରି ଘରେ ପଶି ମୋ ହାରଟା ମାଗିଲେ । ମୁଁ ମନାକଲି, ପାଟିତୁଣ୍ଡ କଲେ, ପିଟିବି ବୋଲି ଡରେଇ ଥରେଇ ହାରଟା ନେଇଗଲେ । ମୋର ତ ଉଠିବାକୁ ଶକ୍ତି ନାହିଁ । ମୋ ପେଟ ଅଣ୍ଟା କଣ ହୋଇଯାଉଛି ।" ଚନ୍ଦ୍ରାଦେବୀ ପାଗଳପରି ହୋଇ କହିଲେ ତୁନିପଡ଼େ, ତୁନିପଡେ । ସାଇ ପଡ଼ିଶାରେ ଶୁଣିଲେ, ଭଗାରି ଶତ୍ରୁ ଶୁଣିଲେ, କିସ ବୋଲିବେ ।

ସୂତିକା ଶାସ୍ତ୍ରନିପୁଣା ଶଙ୍କୀ ବାଉରାଣୀ ଡାକରା ପାଇ ସେକ୍ଷଣି ଆସିଲା । ଦେଖି ଦେଖି କଣ ହୋଇଛି । ଶଙ୍କୀ ବାଉରାଣୀ ଗୁଣିଆ ବଇଦ୍ୟାବି ଜାଣେ । ଫୁହୁଁ ଫୁହୁଁ କହିଦେଲା ପଡ଼ିଶାଘର କିଏ ଶତ୍ରୁ ଅଛି ନା ଗୁଣିଆଁ କରିଚି । ଠାକୁରାଣୀ ପେଷି ଦେଇଚି—

ଚନ୍ଦ୍ରାଦେବୀ ବ୍ୟାକୁଳା ହୋଇ କହିଲେ, "ସାଇପଡ଼ିଶାରେ ତ ମୋର ଭଗାରି ଶତ୍ରୁ ଭର୍ତ୍ତି ହୋଇ ରହିଛନ୍ତି ଲୋ, ଶଙ୍କି ! ପେଟର ପିଲାଟି ବଞ୍ଚିବନା

ନାହିଁ କରିଲୁ ।" ଶଙ୍କି ପେଟରେ ହାତ ବୁଲେଇ ଦେଇ କହିଲା, "ଅଠମାସର ପୁଅ ପେଟ ଭିତରେ ଖଳଖାଳ ହେଉଛି । ଆଣ ଆଣ, ଆଠୁଟା ମନ୍ଦାର ଫୁଲ, ଆଠୁଟା ନଡ଼ିଆ, ଆଠୁଟା କଦଳୀକୁକୁଡ଼ା, ଠାକୁରାଣୀଙ୍କ ଠେ ଭୋଗ ନଗେଇଦେବା । ଏବେଖଣି ପୁଅ ତଳେ ପଡ଼ି କୁଆଁ କୁଆଁ କରିବ । ଆଠକୋଡ଼ି ବରଷ ଆୟୁଷ ହବ ।"

ଚଉଦ ବର୍ଷର ଝିଅ, ଗର୍ଭ ବେଦନାରେ ଛଟପଟ ହେଉଛି । ଏଣେ ଶଙ୍କୀ ଜାଣିଲାଣି ମଲା ପିଲାଟା ପେଟ ଭିତରୁ ବାହାରିବା ମହା ମୁସ୍କିଲ । ଜିନଷ ଧରି ଠାକୁରାଣୀଙ୍କ ପାଖରେ ଭୋଗ ନଗେଇ ଦେଇ ଶଙ୍କୀ ପୁଣି ଦଉଡ଼ି ଆସିଲା । ଶେଷବେଳକୁ ଶଙ୍କୀ ସାହସ କରି ପେଟ ଭିତରୁ ପିଲାଟାକୁ ଟାଣି ନେଇ ଆସିଲା ।

ଚନ୍ଦ୍ରାଦେବୀ ମଲା ଛୁଆଟାକୁ ଧୁଇଁନ୍ତୁ ଦେଖି କେଡ଼େ କଥା ହେଲାରେ ଦଇବ ! ମୋର କୁଳ ଉଦ୍ଧରି ଥାଆନ୍ତୁ ରେ ବାପା ! ମୃତ ଶିଶୁ ପୁତ୍ର କି କନ୍ୟା ସନ୍ତାନ ଚନ୍ଦ୍ରା ଜାଣି ନଥିଲେ ମଧ୍ୟ, ଶଙ୍କୀର ପୂର୍ବ କଥାରେ ବିଶ୍ୱାସ ରଖି ପୁତ୍ର ସନ୍ତାନ ବୋଲି ଧାରଣା କରି ପକେଇଛନ୍ତି । ସେଥିପାଇଁ ସେ ମୋ ବାପରେ, ତୁ ମୋ ଅହାଙ୍କ ଘର ଉଜଳ କରିଥାନ୍ତୁ ପରରେ, ଇତ୍ୟାଦି ପ୍ରକାର ବିଳାପ କରି ଗୋପାଳଙ୍କ ପାଖକୁ ଗଲେ ।

ଭିତରେ କାନ୍ଦୁଣି ଶୁଣି ଗୋପାଳ ଉଠି ଆସିବାକୁ ଚେଷ୍ଟା କରୁଥିଲେ, ଚନ୍ଦ୍ରାଙ୍କୁ ଦେଖି ପଚାରିଲେ, "କଣ ହେଲା ଅଲୋ ବୋଉ ? ହଠାତ୍ କଣ ହେଲା ମୁଁ ତ କିଛି ବୁଝିପାରୁନାହିଁ ।"

କାର୍ତ୍ତିକ ନଷ୍ଟବନ୍ଧ ପାଠାଗାରରୁ ବିଫଳ ମନରେ ଫେରି, ରୋଷେଇଘର ଆଡ଼କୁ ଲୁହିଁ ଦେଇ ଆସିଲା ଚୁଲିରେ ସେଇପରି ଭାତହାଣ୍ଡି ଥୁଆହୋଇଛି । ସୂର୍ଯ୍ୟଦେବତା ସେ ପାଖକୁ ଗଲେଣି—ବାବୁତ ଖାଇ ନ ଥିବେ । ସେ ଗୋପାଳଙ୍କ ପାଖକୁ ଗଲାବେଳକୁ ଚନ୍ଦ୍ରାଦେବୀ କାନ୍ଦ କାନ୍ଦ କହୁଛନ୍ତି, "ଆହା ଆଉ ଅଳ୍ପକେ ହେ ! କୁଳ ଉଜ୍ଜଳିବା ପଦାର୍ଥ ଜନ୍ମ ହୋଇଥିଲା— ।"

"କଣ ତୁମେ କହୁଛ ମୁଁ ତ କିଛି ବୁଝିପାରୁନାହିଁ ! କଣହେଲା ?"

"କାଇଲିପରି ମୋ କୋକର ପୁଅଟିଏ ହୋଇଥିଲା, ମରିଗଲା ।"

"କଣ କହୁଛ' କୋକର ପୁଅ ହୋଇଥିଲା !"

"ଆଉ କଣହେ ଯୋ ସୁନ୍ଦର ପୁଅଟି ହୋଇଥିଲା ମରେ ଗୁଡ଼ ଲୁଆଡ଼େ ପକେଇଗଲା ।" କାର୍ତ୍ତିକ ମନେ ମନେ ମହା ବିରକ୍ତ ହୋଇ କହିଲା, "ମରିତ ଗଲାଣି ।"

"ହଁରେ କାର୍ତ୍ତିକ, ଏତେ ବଡ଼ ସମ୍ପଦ ଭୋଗ କରିବାକୁ ତା ଭାଗ୍ୟରେ ଥିଲେ ବଞ୍ଚି ଥାଆନ୍ତାନ — ପୂର୍ବ ଜନ୍ମରେ ତପ କରିଥିଲେ ସିନା ବଞ୍ଚି ଥାଆନ୍ତା ?"

କାର୍ତ୍ତିକର ବିରକ୍ତିଟା ବଢ଼ିଗଲା ଦ୍ୱିଗୁଣ ହୋଇ । ସେ ପ୍ରଭୁ ଭୃତ୍ୟ ସମ୍ବନ୍ଧଟା ଏକାଥରକେ ଭୁଲିଯାଇ କହିପକାଇଲା "ହଁ ତେତେ ତପସ୍ୟା ତାର ନାହିଁ । ଆପଣଙ୍କ ଭଳି ପଣି ଆଉଙ୍କ ନାତି ହୋଇଥାନ୍ତା । ଆପଣଙ୍କ ଭାଗ୍ୟରେ ମଧ୍ୟ ପଣି ନାତିର ଘୁଅ, ମୁତ ପୋଛିବା ଯୋଗନାହିଁ । ସେ ସବୁତ ହେଇ ଗଲାଣି । ବାବୁ ରୋଗୀ ମଣିଷ, କିଛି ଖାଇ ନାହାନ୍ତି, କଣ ଖାଇବେ, ଚୁଲିଟା ଲିଭିଗଲାଣି । ଚନ୍ଦ୍ରାଦେବୀ କାର୍ତ୍ତିକର କଥାରେ କାନ ନ ଦେଇ କାନ୍ଦ କାନ୍ଦ ଚାଲିଗଲେ ।"

## ନଅ

କୋକ ବ୍ରହ୍ମପୁର ଖ୍ରୀବକାସ ହୋଟେଲରେ ପ୍ରାପ୍ତ ରହୁଛି । ରହିବାକୁ ବାଧ ହେଉଛି । ଦୁଷ୍ଟବୁଦ୍ଧି ତାକୁ ବାଧ କରି ରଖୋଉଛି । ନ ରହିଲେ ତାର ଏତେବଡ଼ ବ୍ୟବସାୟ ଦେଖିବ କିଏ ? ଦୁଷ୍ଟବୁଦ୍ଧି ବଡ଼ ଚାଲାକ । ସବୁ କଥାରେ ସଚେତ । ସମୟ ପଡ଼ିଲେ ଦଶ ଟଙ୍କା ଟାଣି ଦେଇପାରେ । ଭାଙ୍ଗ ଭାଙ୍ଗୁଣି ସବୁ ଖାଇପାରେ । ଗୁଟେନ୍ୟ ଗୁଟେନ୍ୟ ବୋତଲ ଉଠେଇ ପିଇ ଦେଇପାରେ । ନଥିଲେ ବି ଚକେଇଦେଇ ପାରେ । ଦୁଷ୍ଟ କୋକର ହିତୈଷୀ ବନ୍ଧୁ । ସେଥିପାଇଁ ତାର ସ୍ୱାସ୍ଥ୍ୟ ସମ୍ବନ୍ଧରେ ମଧ୍ୟ ସେ ସଦା ଚିନ୍ତିତ । କୋକ ଯେତେବେଳେ ରୁଗ୍ଣା ସ୍ତ୍ରୀକୁ ଭୁଲିବା ନିମନ୍ତେ ଇତସ୍ତତଃ କରୁଥିଲା,

ସେତେବେଳେ ଦୁଷ୍ମ ଶାନ୍ତ ନର୍ସର ପାଳିତା କନ୍ୟା ସୁପ୍ରସନ୍ନା ସହିତ ସାକ୍ଷାତ କରେଇ ଦେଲା । ସୁପ୍ରସନ୍ନା ଅତି ସୁନ୍ଦରୀ, ଶିକ୍ଷିତା । ନିଜେ ଥରେ ବୋକାହୋଇ ଧର୍ମ ହଜେଇଦେବା ପରେ ବୋକା ବନେଇବା ବିଦ୍ୟାରେ ସୁଦକ୍ଷ ହେବା ଚେଷ୍ଟା ତାର ଚାଲିଛି । ପ୍ରେମ ଫ୍ରେମର ଧାରଣା ତାର ନାହିଁ । ଧର୍ମ ହଜେଇ ଦେହ ବିନିମୟରେ ସେ ଆଦାୟ କରିବାକୁ ଚାହେଁ ଟଙ୍କା । ଆଗେ ଦରଦାମ କରି ପରେ ଦୁଆର ଖୋଲିବା ନିୟମ ତାର । ଦୁଷ୍ମକୃଷ୍ଣ କଷ୍ଟକରି ସତି ଗୋଟିକୁ ପନ୍ଦରରେ ରଖିଛି ।

ହୋଟେଲର ଉପର ଘରେ କୋକ ଶୋଇଥିଲା । ନିଦରେ ବ୍ୟାଘାତ ଘଟିବ ବୋଲି ସୁପ୍ରସନ୍ନା ରାତିରେ କୋକକୁ ଏକ ପ୍ରକାର ଜୋର କରି ବାହାରେ ଛାଡିଦେଇ ଦୁଆର ବନ୍ଦ କରିଦିଏ । କୋକ ସେଇ ଶେଷ ରାତିରେ ଶୋଇଛି, ନିଦ ଭାଙ୍ଗି ନଥିଲା । ଦୁଷ୍ମ ଦେହରେ ହାତ ପକାଇ ଝାଙ୍କି ଦେଇ କହିଲା : "ନିଶ୍ଚିନ୍ତରେ କାନରେ ତେଲ ଦେଇ ଶୋଇଛୁ । ଖାଲି ମୁଁ ରହିଛି ହଇରାଣ ହେବାକୁ । ସେ ଆଡ଼େ ଶଙ୍କରନ୍ ୱର୍କସପର ସେକ୍ରେଟେରୀ ଆସି ଆମର ଦୁଇଟା ଯାକ ଗାଡ଼ି ନେଇଗଲା ।" କୋକ ତାର ନିଦ୍ରାପୀଡ଼ିତ ବିବର୍ଣ୍ଣ ଆଖି ଦୁଇଟା ଅଳ୍ପ ଖୋଲି ଚାହିଁଦେଇ ବିରକ୍ତ ଭାବରେ କଡ଼ ଲେଉଟେଇ କହିଲା, "ଯା'ମ, ନେଲେ ନେଉ ।"

ଦୁଷ୍ମ ମୁରବୀପଣ ଦେଖେଇ କହିଲା, "ନେଲେ ନେଉ ! କଣ କହିଲୁ ? ତିନିଥର କରି ପନ୍ଦରଶ ଦିଆହେଲାଣି । ଗାଡ଼ି ଦିଟା ଛାଡ଼ିଦେବାକରେ ? ଉଠୁ, ଏଥର ଟଙ୍କାଟା କମିଛି ହେଲେ ଦେଇ ଦେଲେ ଗାଡ଼ି ଦିଟା ରହିଯିବ ।"

କୋକ ବିରକ୍ତ ଭାବରେ ବସିପଡ଼ି କହିଲା, "ସୁନ ହାର ବନ୍ଧାପକେଇ ପାଞ୍ଚଶ ଆଣିଲୁ ପରା ?" —"ପାଞ୍ଚଶ ଆଣିଲି ଯେ ମୁଁ କଣ ଖାଇଦେଲିକରେ ? ମୁଁ ସିନା ତୋ ପାଖରେ ପଡ଼ି ରହିଛି । ସାହେବ ତ ଛାଡ଼ିବା ଲୋକ ନୁହେଁ । ବେତନ, ଭତ୍ତା ଶହେ ନେଇଗଲା । ସେଦିନ ଆଣିଥିଲୁ ସୁପ୍ରସନ୍ନା ପାଇଁ ଶାଢ଼ୀ କଣ କଣ, ତାଙ୍କୁ ଶହେ ଦେଲି । ହୋଟେଲରେ ତୁ ମୁଁ ଖାଉଚେ, ସୁପ୍ରସନ୍ନା ପାଇଁ ରାତି ଓଳଟା ପଠା ହେଉଛି, ସବୁ ତ ଫାଷ୍ଟକ୍ଲାସ ମିଲ୍, ସେ ନେଲା ଶହେ । ପେଟ୍ରୋଲର ବାକି ପାଞ୍ଚଶହରୁ ଦୁଇଶ ଦେଇଚେ, ଆଉରି ତିନିଶ ଅଛି ।" କୋକ ନିଶା ଘୋରରେ ଅଳ୍ପ ଆଖି ଟେକି କହିଲା, "ଯା'ବା, ମତେ ନିଦ ଲାଗୁଛି । ପରେ ଆସି ଏ କଥା କହିବୁ । ହଁ ହଁ, ସୁପ୍ରସନ୍ନା କହୁଚି ତାର ଆଉ ଦିଟା ଶାଢ଼ୀ ଦରକାର ।"

ଦୁଷ୍ମ ଶାଢ଼ୀକଥା ନ ଶୁଣି କହିଲା, "ମୋବିଲ୍ ଆଇଲର୍ ବାକିଅଛି ଦଶ ଟଙ୍କା । ଶହେପାଞ୍ଚ ଗାଡ଼ିର ଡ୍ରାଇଭର ମାସକର ବେତନ ନେଇନାହିଁ । ହଁ, କୋ'ଆଡ଼ର କୋ'ଆଡ଼ର ଆହୁରି ସୁରଶ ପାଞ୍ଚଶ ବାକି ହୋଇ ରହିଚି, ସବୁ ଦେଇଦେ' ଗଲା । ଘରୁ ବାହାରିଲେ ସବୁ ଆସି ମୋ ଚୋଟି ଧରୁଛନ୍ତି ଯେ ମୁଁ କୋଉଠୁ ଆଣିବି ?"

କୋକ ଶୋଇବାକୁ ଚେଷ୍ଟା କରି କହିଲା, "ପରେ ସବୁ ଦେଖିବା । ତୁ ଯା, ମୁଁ ଶୋଇବି ।"

ଗୋପାଳଙ୍କ ଶରୀର ସମ୍ପୂର୍ଣ୍ଣ ଭଲ ନ ହେଲେ ମଧ୍ୟ ମନ ଆଉକୁ ଯାଇ ନ ଥିଲା । ସେ ଆଣ୍ଠୁରେ ପାଦରେ ସମ୍ପୂର୍ଣ୍ଣ ବ୍ୟଥା ଅନୁଭବ କରୁଥିଲେ; ତେବେ ସୁଦ୍ଧା ସ୍ୱାଭମତ ସ୍ନାନ ଆହାର ଚଳେଇ ନେଉଥିଲେ ।

ପାଞ୍ଚବର୍ଷର ହାତଭଙ୍ଗା ଚଉକିଆରେ ବସିବାକୁ କମ୍ପା ଟେବୁଲଟାର ନଡ଼ନଡ଼ିଆ ଖୁଣ୍ଟଟାରେ କାଗଜ ମେଞ୍ଚା ଠେସ ଦେଇ ବସିବାକୁ କୌଣସି ଆପତ୍ତି ତାଙ୍କର ନଥିଲା ; କିନ୍ତୁ ଚଷମା ଖଣ୍ଡିକ ହଜିଗଲାଠୁ ସେ ବଡ଼ ଅସ୍ଥିର ହୋଇ ପଡ଼ିଲେ । ଚେଷ୍ଟାକରି ଲେଖି, ଚେଷ୍ଟାକରି କଷ୍ଟରେ ପଢ଼ି, ତାଙ୍କର ମୁଣ୍ଡରେ ଆଖିରେ କିପରି ଗୋଟାଏ ଅବ୍ୟକ୍ତ ପୀଡ଼ା ଜାତହେଲା । ସେଥିପାଇଁ ସେ ସେଦିନ ଲେଖୁ ଲେଖୁ ଟେବୁଲ ଉପରେ ମଥା ଥୋଇ ଆଖି ମୁଦି ବସି ରହିଥିଲେ । ଅନନ୍ତ ସତର୍କ ଭାବରେ ଦୁଆର ଠେଲି ଆସିଲା ଭିତରକୁ । ଗୋପାଳ ମଥାଟେକି ଚାହିଁ କଣ ପଚାରିବାକୁ

ଯାଉଥିଲେ, ଅନନ୍ତ କହିଲା ବାବୁ, ଆପଣ ଯେଉଁ ବେଲଡ଼ାଲାଆରେ ପ୍ରଥମେ କାର୍ଯ୍ୟରେ ଥିଲେ, ସେଇଠି ଶିକ୍ଷକ କାର୍ଯ୍ୟଟିଏ ପାଇଲି । ଦରମା ପଞ୍ଚଷଠି । ପ୍ରଥମ ମାସରେ ବେତନ ପାଇବା ଦିନ, 'ଦର୍ପଣ'ରୁ ଆପଣଙ୍କର ଲେଖା ପଢ଼ି, ଆନନ୍ଦରେ ଆପଣ ଲେଖାଲେଖି କରିବେ ବୋଲି, ଏଇ ଝରକଲମ ଖଣ୍ଡିକ, ଆଉ ଟିକ୍‌କଣ କାଗଜ ଗଣ୍ଡିକ ଦେଇଛି ।

ଅନେକ ଦିନ ପରେ ଗୋପାଳଙ୍କ ମୁହଁରେ ଫୁଟି ଉଠିଲା ତୃପ୍ତିର କ୍ଷୀଣ ହାସ୍ୟ । ସେ କଲମ ଖଣ୍ଡିକ ଉଠେଇ ନେଇ କହିଲେ, କାର୍ଯ୍ୟରେ ଥିବା ସମୟରେ ଥରେ ମୁଁ ଭଲ କଲମ ଖଣ୍ଡିଏ ଉପହାର ପାଇଥିଲି । ସେ କଲମଟିରେ ମୁଁ ବହୁତ ଲେଖିଛି । ଦୁର୍ଭାଗ୍ୟରୁ କଲମଟା ବ୍ରହ୍ମପୁରଠୁ କିଏ ନେଇଗଲା । ସେଦିନଠୁ କାଳଘଣ୍ଟ ଗୋଟିଏ ଧରି ବଡ଼ ହଇରାଣ ହେଉଥିଲି । ହଁ, ବନମାଳୀ କଣ ଘରକୁ ଆସିଛି ? ଗୋପାଳଙ୍କ କଥା ଶେଷ ହେବା ପୂର୍ବରୁ ଭିତର ପାଖରୁ ଦୁଆରଟାକୁ ଧଡ଼ପଡ଼ କରି ଖୋଲିଦେଇ ଭିତରକୁ ଆସୁ ଆସୁ ଝୁଙ୍କୁରିଆ ଗଳାରେ ଚନ୍ଦ୍ରା ପଚାରିଲେ, କିଏମ ତୁ ?

ଅନନ୍ତ କହିଲା "ମୁଁ ଭାଉଜ, ଅନେକ ଦିନ ହେଲା ଆସି ନଥିଲି, ନମସ୍କାର ! ବାବୁ ଦେଇଥିଲି ଏ କଲମଟା—"

ଚନ୍ଦ୍ରା କହିଲେ "ମୁଁ ଭାଉଜ ଅନେକ ଦିନ ହେଲା ଆସିନଥିଲି, ନମସ୍କାର" ! ତୁ ଜଳିଯା, ତୋ ନମସ୍କାର ପୋଡ଼ିଯାଉ । କାହିଁପାଇଁ ବାବୁ ଦେଇଥିଲୁ କଲମଟା—କହୁ କହୁ ଚନ୍ଦ୍ରା ଗୋପାଳଙ୍କ ହାତରୁ କଲମଟା ଆଣି ଇମିତି ଜୋରରେ ଝରକା ତଳର କାନ୍ଥ ଉପରକୁ ଫିଙ୍ଗି ଦେଲେ ଯେ ଖୋଳଟା ଦିଖଣ୍ଡ ହୋଇଯାଇ ନିବ୍‌ଟା ଦି'ଭାଗ ହୋଇ ମୋଡ଼ି ହୋଇଗଲା ।

ଅପ୍ରାସଙ୍ଗିକ ଅପ୍ରତ୍ୟାଶିତ ପରିସ୍ଥିତି ଦେଖି ଗୋପାଳଙ୍କ ମୁହଁ ବିବର୍ଣ୍ଣ ହୋଇଗଲା । ସେ ଅନନ୍ତ ମୁହଁକୁ ନ ଚାହିଁ ମଥା ନୁଆଁଇଦେଲେ । ଅନନ୍ତ ଅତି ସନ୍ତର୍ପଣରେ ହୋଇ କଲମଟା ଉଠେଇ ଆଣୁ ଆଣୁ କହିଲା, ଅକାରଣରେ କଲମଟା ଭାଙ୍ଗିଗଲା ।

"ଅକାରଣରେ ଭାଙ୍ଗିଗଲା ପୋଡ଼ିଯାଉ ତୋ କଲମ । ଜଳିଯାଉ ତୋ ବାବୁ । ମ ଇପ ଅଲେଇଷଣୀ କଥାରେ, ବାଟରେ ଘାଟରେ ମୋ ପିଲାକୁ ଯାହା ତାହା ଗାଳି କାନ୍ଦୁଣି କରୁଛ । ତମ ବୁଢ଼ାଟା ଟିକିଏ ନ ଜାଣି ଗାଡ଼ିରେ ବସିଥିଲା, ମୋ କୋକ ଉଠେଇ ଦେଲା । ମୋ କୋକ କ୍ୟାପ୍‌ରେ ଥିବା ପୁଅ । ଉଠେଇ ଦେଲା ବୋଲି ଯାହା କାଟିଲାଣି, କାଟୁଛାଣି !"

ଅନନ୍ତ ସହଜଭାବରେ କହିଲା, "ଉଠେଇ ଦେଇନାହିଁ, ତାକୁ ଗାଡ଼ି ଉପରୁ ଠେଲି ପୋଷାକ ଇମିତି ହଇରାଣ କରିଦେଲା, ତାର ମୁହଁ ନାକ ଖଣ୍ଡିଆ ହୋଇଯାଇଛି ।"

"ଖଣ୍ଡିଆ ହୋଇଯାଇଛି, ମରି ତ ଯାଇଥିବ ଆଉ କଣ ? ଯା ଯା ଭଲ ଲୋକ, ମୋ ଘରୁ ତୁ ଆଗ ଗୋଡ଼ କାଢ଼ିଲୁ । ନେ ତୋର କାକର । କାକର ଖଣ୍ଡେ, କଲମୁଟେ ଲାଞ୍ଚଦେଇ କି' ହେଲେ କଢ଼େଇ ନେବେ ବୋଲି ବାପ ପୁଅ ନୁଙ୍କୁରୁ ପୁଙ୍କୁରୁ ହୋଉଚନ୍ତି ।"

"ମୁହଁ ସମ୍ଭାଳି କଥା କହ ଭାଉଜ ! ତୁମେ ନାତିକି ଯେଉଁ ଭାବରେ ପ୍ରଶ୍ରୟ ଦେଉଛ, ତାର ଫଳ ପାଇବ ଯେ । ମୋର କଣ ଯାଏ । ଭାଇନା ତ ତୁମକୁ ସେଇ ଦିନୁ ଏଇ ମାର୍ଗରେ ଚଳେଇ ଆଣିଛନ୍ତି । କଲି କର୍ମର ଫଳ ସମସ୍ତେ ତ ଭୋଗୁଛନ୍ତି, ମୁଁ ଆଉ କହିବି କଣ ।"

ଅନନ୍ତ ଚାଲିଗଲା ପରେ ଚନ୍ଦ୍ରାଦେବୀ କହିଲେ, "ତମ ନାଁରେ ବଣିପୁରରେ ଥିବା ଭୂଇଁ ଖଣ୍ଡିକ ମୋ ନାଁରେ କରିଦିଅଟି ।"

"ସେ ଭୂଇଁଟା ସେବାସଦନକୁ ଦେଇଦେଲି, ଅନୁବୋଉ !"

"ଭୂଇଁଟା କା'କୁ ଦେଲ ?"

"ସେବାସଦନ ନାଁରେ ଲେଖିଦେଲି ।"

"ମୋତେ କି କଲରେ ଦଇବ ! ବର୍ଷକୁ ଧୂଳିଆ ସଞ୍ଜା ଦଶ ଭରଣ ଧାନ ଆସୁଥିଲା । ଷଷ୍ଠି ଭରଣ ଭୂଇଁ କୋ ସଦନକୁ ଦେଲ ।"

ଗୋପାଳ ଚନ୍ଦ୍ରାଙ୍କ କଥା ଉପରେ କୌଣସି ଜବାବ ଦେଇ ନଥିଲେ । ଚୈତ୍ର ପବନ ପରି ହୁ'କରି ଘର ଭିତରେ ପଶିଯାଇ, ଚନ୍ଦ୍ରାଙ୍କ ମୁହଁକୁ ଚାହିଁ କାର୍ତ୍ତିକ କହିଲା, "ଶୁଣି ଲକଁ ଆଜ୍ଞାଁ, ପଧାନଁ ଘରଁ ପୁରୁଷଁ ରାଜବାଁ, ଗଞ୍ଜାଡ଼ଁ ବଜବାଁ ଆଜ୍ଞାଁ, ଇମିତିଁ ଛତରଁ, ଗଞ୍ଜେଇଁ, ମଦଁ ଆପୁଁ ନିତିଁ ନିଶାଁ ଖାଇଁ ଫାଙ୍କିଁ କରିଁ ଦବ । ଏଇଁକ୍ଷଣିଟିଁ ଆସିଲି, ତା କକାଙ୍କୁଁ କହୁଥିଲିଁ, ଶୁଣିଲିଁ, କୋକିଁ ବାବୁଙ୍କଟିଁ ଗାଡ଼ିଘଟାଁ କେଉଁ ଏଜେଣ୍ଟଁ ନେଇଗଲାଁ ।

ଚନ୍ଦ୍ରାଦେବୀ ବିଶ୍ୱାସ କଲେ ମଧ୍ୟ ଅବିଶ୍ୱାସ କଲାପରି ଭାବ ଦେଖେଇ କହିଲେ, "ଘୋଡ଼ାମୁହାଁ କେତେ ମିଛ କହୁଛୁ ।"

ମିଛଁ କାହିଁକିଁ କହିବିଁ ଆଜ୍ଞାଁ ! କହିବେ ଯଦି ରାଜବାକୁ ଡାକଦେବି ।

ଚନ୍ଦ୍ରାଦେବୀ ଦେଖିଲେ, କାର୍ତ୍ତିକ ଏକ୍ଷଣି ସବୁକଥା ସ୍ୱାମୀଙ୍କ ଆଗରେ କହିଦବ । ସେ ଆଉ ମୁହୂର୍ତ୍ତେ ବିଳମ୍ବ ନକରି କହିଲେ, ଆସେ ଆସେ ରାତିହେଲାଣି ବାନ୍ଧିବୁ ।

କାର୍ତ୍ତିକ ସବୁ ବୁଝି ମନେ ମନେ ହସି ଚନ୍ଦ୍ରାଙ୍କ ପଛେ ପଛେ ଚାଲିଗଲା ।

ଚନ୍ଦ୍ରଦେବୀ ତୁଳସୀମୂଳେ ସଳିତା ଦେଇସାରି, ହାତଯୋଡି କୋକର କଲ୍ୟାଣ କାମନାରେ ବୃନ୍ଦାବତୀଙ୍କୁ ଜଣାଉଥିଲେ । ଆଗେ ଆଗେ ଦୀଷ୍ଟକୃଷ୍ଣ, ପଛରେ କୋକ ଭିତରକୁ ଆସିଲେ । ଦୁଷ୍ଟ ଚନ୍ଦ୍ରାଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣାମ କରି ଉଠି ଠିଆହେଲା । ଅପରାହ୍ନର କାର୍ତ୍ତିକ ଦେବା ସମ୍ବାଦଟା ଚନ୍ଦ୍ରାଙ୍କ କର୍ଣ୍ଣକୁହରେ ପ୍ରବିଷ୍ଟ କରି ହୃଦୟପଟକୁ ଦଗ୍ଧ କରୁଥିଲା । ତେଣୁ ସେ କାହାକୁ କିଛି ନକହି ଆଡ଼େଇ ଚାଲିଯିବାକୁ ଚେଷ୍ଟା କରୁଥିଲେ । ଦୁଷ୍ଟ ଗମ୍ଭୀର ହୋଇ କହିଲା, ଆଉ ପାରି ହେଲାନାହିଁ; ଅଣ୍ଡ, ଗାଡ଼ି ଫାଡ଼ି ସବୁ ଝିକାଝିକି କରିଦେଇ ଚାଲିଆସିଲୁ । ଚନ୍ଦ୍ରାଙ୍କ ପ୍ରାଣହୀନ ଦେହରେ ସାମାନ୍ୟ ଶକ୍ତିର ଯେପରି ସଞ୍ଚାର ହେଲା । ସେ ବ୍ୟଗ୍ର ହୋଇ ପଚାରିଲେ, କୋଉଦିନ ବିକିଲି ? କେତେ ଟଙ୍କାକୁ ବିକିଲି ? କାହିଁ ସେ ଟଙ୍କା ? ଦୁଷ୍ଟ ପକେଟରୁ ଟଙ୍କା ବାହାର କରି କହିଲା, ହଜାରେ ଟଙ୍କା ଆସିଛି । ଗାଡ଼ି ଆସିବା ଦିନଠୁ ଯେତେ ଆୟ ବ୍ୟୟ ସବୁ ହିସାବ କରି ଦେଖ ହେଲାନା ? କୋକ ଆଗ କେତେଟଙ୍କା ଆଣିଥିଲା ? ଆମେ ସବୁ ତମଠୁ ମୂଳଧନ ନେଇଥିଲୁ ଦୁଇ ହଜାର ପାଞ୍ଚଶ । କୋକ ଆଣିଥିଲା ଏଗାରଶ । ଏଇ ଏବେ ଆସିଛି ହଜାରେ । ଆଉ ଚାରିଶ ଆର ମାସକୁ କଳନ୍ତର ସହିତରେ ଆସିବ । ଚନ୍ଦ୍ରା ପ୍ରଥମେ ହଜାରେ ଟଙ୍କାଟି ହାତରେ ଧରି, କୋକ ହାତ ଧରିପକେଇ ପଚାରିଲେ, ପନ୍ଦରଶ ଟଙ୍କାର ସୁନାରେ ଛମାସ ହୋଇନ ଥେଇନ୍ ମାଳଟା କରିଥିଲି, ଏବେ ସୁନାଦର ଯାହା ହୋଇଛି, ଦି'ହଜାର ହବ । ସେଦିନ ମାଳଟା ଧରି ଧାଇଁ ପଳେଇଲୁ, ସତ କହିଟି ବିକିଲୁ ?

କୋକ ଦୁଷ୍ଟ ମୁହଁକୁ ଚାହିଁ କଣ କହିବାକୁ ଯାଉଥିଲା । ଦୁଷ୍ଟ ମହା ବ୍ୟସ୍ତତାର ଅଭିନୟ କରି କହିଲା, ରହିଥା ଅଣ୍ଡ, ଯାହାହେଲା । ସେଦିନ ହଠାତ୍ ଟଙ୍କା ଦରକାର ହେଲାଯେ ମୁଁ ପଠେଇଲି ଯା ଆଈଙ୍କି ମାଗି ଆଣିବୁ । ମୂର୍ଖମୁଣ୍ଡା ସ୍ୱୀଠୁ ନେଲା ହାରଟା । ହାରଟା ମୁଁ ନେଇ ଆସିଛି । ଚନ୍ଦ୍ରାଦେବୀ ହାରଟା ନୋଉନୋଉ କହିଲେ, ବୁଡା ହୋଇଥାରେ ପୁଅ । ଏ ଓଲଟାକୁ କମିତି ବାଟ ଦେଖେଇଦେ । ବସେ ବସେ ମୁଁ ଆସିଛି । ଆଈ ଭିତରକୁ ଗଲାପରେ ଦୁଷ୍ଟ କୋକକୁ କହିଲା, ମୂର୍ଖ ମୁଣ୍ଡାନୋଟ ଲେଖେଇ ଟଙ୍କା ଆଣିବା ନାହିଁ ବୋଲି ଥିଲୁ ଯେ କେବେ କେ ପଞ୍ଚ ବର୍ଷ ପରେ ସିନା, ଦାମପାଣ ନୋଟଟାକୁ ଧରି ଦାବୀ କରିବ, ଏକ୍ଷଣି ଆଉ ତୋ ଆଈ ଘରେ ପଚାରନ୍ତାକିରେ ? କୋକ ଦୁଷ୍ଟର ପିଠି ଥାପୁଡ଼େଇ ବୁଦ୍ଧିର ପ୍ରଶଂସା କଲା ।

ଚନ୍ଦ୍ରାଦେବୀ ଉତ୍ସାହରେ ଟଙ୍କା ସୁନା ସିନ୍ଦୁକରେ ରଖିଦେଇ ଆସୁ ଆସୁ ପଚାରିଲେ, ହଇରେ ଦୁଷ୍ଟ ଏ' ଯେ କାର୍ତ୍ତିକ ଘୋଡ଼ା-ମୁହାଁ ଆଜି ଦିପହରେ, ଏ' କୋକର ଅଜା ପାଖରେ ଉଣା ହଟହଟା କଲାକିରେ ? ଦୁଷ୍ଟ ପଚାରିଲା, କଣ କଣ ?

"ରଜବା ଆଜ ଆସିଲା, ଗାଁରେ କୋଠେ କଜଥିଲା, କୋଞ୍ଚ୍ ଏଗୋଟା ସବୁ ଗାଡ଼ ନେଇଗଲା ।"

"ରଜବା ଏକଥା କହିଲା ?"

"କଇଲା ବୋଲି ତ କାନ୍ଦିକି କଉଥିଲା ।"

"ଡାକ ଆଣିବନି ରଜବାକୁ ?"

"ବୋକ ରଖିଯାଇଁ କହିଲା, ଯାଂ'ଟରେ ଦୁଖି, ତାକୁ ଡାକ ଆଣିବୁ—"

"ଯାଉଛି ଡାକ ଆଣିବ, କମିତ ସେ ଖଳା ମିଛ କହିଲା । ଆଜ ଯୋଉଡ଼ି ସ୍ୱପୁଡ଼ାରେ ଡାଙ୍କୁଖାଲ ଉଡ଼େଇଦେବ ।" ଦୁଖି ଚାଲିଗଲା ପରେ, ଛଡ଼ା ବୋକ ପାଖକୁ ଘୁଞ୍ଚି ଆସି ପିଠିରେ ହାତ ବୁଲେଇ ପଚାରିଲେ, ହଇରେ ବାପ୍ପ ବୋକରେ, ଏ' ପାଞ୍ଚପଇସା ଲଭ ତ ହେଉଥିଲା, ମୋଟରଗୁଡ଼ାକ ଚଳଚଳି କାହିଁକରେ ?"

ବୋକ ମୁଣ୍ଡ କାନ ଆଉଁସି ବୁଝି ବାହାର ଘଟୁ କରୁ ଦୁଖି ବଚେଇ ଦେଇଥିବା କଥା ମନେ ପଡ଼ିଗଲା ! ସେ ଗମ୍ଭୀର ହୋଇ ମୁହଁ ଆଖିରେ ଗର୍ବ ବିରକ୍ତି ଭାବ ଫୁଟେଇ କହିଲା, ତମର ବନ୍ଧୁ ବାନ୍ଧବଙ୍କ ଜ୍ୱାଳାଣ୍ଡରେ ଆଉ ଗାଡ଼ି ଚଳେଇ ହେଲାନାହିଁ ଆଜ୍ଞା । ଛତ୍ର ଦଶ କୋଡ଼ିଏ ବାହାରନ୍ତି, ଖାଲି ସମସ୍ତେ ମାଗଣିଆ । ବରଜିଆ ଯାହା ହଟହଟା କଲା ! ଶେଷକୁ ପୋଲିସ୍ ପାଖକୁ ମଧ ଯାଇଥିଲା । ଦୁଖି ଥିଲାବୋଲି ସେ ପୋଲିସ୍ଟା ତାର ସଙ୍ଗାତ ହେଇଥିବାରୁ କିଛି ହେଲାନାହିଁ । ନଇଲେ ଏତେବେଳକୁ ଜାଇଲଘରେ ତୋ ନାତି ବସିଥାଆନ୍ତା ।

ଦୁଖି ରଜବାର କାନ ଧରି ଟାଣି ଟାଣି ଧରି ଆସୁ ଆସୁ ପାଟିକରି ଡାକିଲା, ଆଜ୍ଞା ! ହେଇଟି ରଜବ ଆସିଲା । ଦୁଖି ରଜବାକୁ ପାଞ୍ଚସୁକା ଦେଇ, ଘାଟ ଗୋଟାଯାକ ଯାହା ବଚେଇ ଥିଲା, ସେତିକିବେଳେ ସେ ହିଁ ହିଁ ହିଁ କରି ହସି ପକେଇ କହିଲା, "ଖାଲି କୌତୁକରେ କହିଦେଲି, ଆଜ୍ଞା । ମୁଁ ତ ଦୁଖିକି, ବୋକକୁ କହିଲି ପୁଛୁଣା ହେଇଗଲେ ଖାଲିସା ହବନାହିଁ । ଏ ଗଳାଏ ତ ସବୁଦନେ ଖାଲି ମାଗଣିଆ ବସିବାକୁ ଆଗ ତୟାର ପଡ଼ିଲେ । ଏ ବେପାର ବଡ଼ ଅସଲଟ ବେପାର, ଆଜ୍ଞା । ମୁଁ ମଧ ଉଚ୍ଛଳ ବୋଧନ କଏ ଗାଡ଼ିତଳେ ପଡ଼ିଗଲେ, ଆଉଥରେ ଆମେ ଯାଆନ୍ତୁ ଜାଇଲକୁ—"

"ଏଁ ସତେକିରେ, ନାଇଁ ନାଇଁ ନୋହୁ ନାଇଁ ଆମର ସେ ବେପାର । ମୋ ବୋକ ଘରେ ବସିଥାଉ, ଆଖିରେ ଦେଖୁଥିବ ।" ଦୁଖି ଗମ୍ଭୀର ହୋଇ କହିଲା, ପୁରୁଷ ପୁଅ ବସି ଖାଇବକି, ଆଜ୍ଞା । ବରହମ୍ପୁରରେ କହେଲେ ବେପାର କଣବ'କୁ ଯିବୁଛି । ଟଙ୍କା ହଜାରେ ଦହଜାର ଧରିଲେ କହେଲେ ବେପାର ହବ ।

## ଦଶ

ରାଧୁଆ ତୋଠରେ, ତୁଳସୀ ମା ଘଷାଘଷି ହେଉଉ ହେଉ ରାଧି ବୋଉକୁ କହିଲା, ହଇହେ ବଉଳ, ବଉଳ, ଦାସିଆଣୀର ନାତି ମୋଟର ବେପାର କରୁଥିଲା । ମଦ ଖାଇ କୋଠେ କାହାକୁ ରଖି, ନାନା ଅନାଚାର କରି, ସବୁ ଟଙ୍କା ଉଡ଼େଇ ବୁଡ଼େଇ ଦେଇ, ପଳେଇ ଆସିଲା ବୋଲି ନଟେଇ ମା କାଲି କହୁଥିଲା ଯେ, ସତ କି ମିଛ କେଜାଣି ? ଜମବୋଉ ସେ ପାଖରେ ଦାନ୍ତ ଘଷୁଥିଲା । ସେ ଚଞ୍ଚଳ ନିଉଟାକୁ ଫିଙ୍ଗି ପକେଇ, ରାଧିବୋଉ ଜବାବ ଦେବା ଆଗରୁ କହିଲା, କେଜାଣି ତା ନନା କହୁଥିଲେ । ବୁଢ଼ାଟାକୁ ଯୋଉ ଘ୍ନାନ କରି ଘରେ ରଖିଛି । ନାତିଟା ନାଁରେ ସବୁ ଲେଖିଦେଲାଣି । ରାଧିବୋଉ ଟିକିଏ ନସରହ । ସେ ଅନେକ କୁଣ୍ଡେଇ ଆଖି ଖୋଲ୍ଲି ପିଠି ଘଷୁ ଘଷୁ କହିଲା, ନାହିଁଲେ ମ, କାହାଘରେ କିଏ କାହା ପୁଅ ପତି ଯାଆଇରେ କମିତି ନଟଖଟ କରୁଛି । ଆମର ସେ କଥା ଖୋଳେଇ ଦେବାକୁ କି ଦରକାର ଅଛି ।

ତୁଳସୀ ମା ମୁହଁ ଟେକାରେ, ଚନ୍ଦ୍ରନୋନାର କାନ ପାଖରେ ଛୁପି ଛୁପି କହି କହିଗଲା ଗଲଟି ନା ! ଉଲେଇ ହେଇଯାଉଛି । ଶାଶୁ ଶ୍ୱଶୁର ଟୋକାଟାକୁ ଘରୁ ବାହାର କରିଦେଇଥିଲେ । ଆଉଣା ଖଣ୍ଡ ଝାହାଣ୍ଡା ଉପରେ ଭୁନ ହେବାର କଥା । ନଇଲେଇ

ମା' କହିଲା, ନାତି ମୋଟରେ ଚଢ଼େଇଲାବେଳକୁ ଅଜା ସେଆଡ଼େ କୋଟେ ଗଣ୍ଡ ବନ୍ଧା, କୋଟେ ଯୁବତୀ ବନ୍ଧା କୋଟେ ଛୁଆଁ ଅଛୁଆଁ ସଙ୍ଗ କରି ଚାଲିଯାଉଛନ୍ତି । ବୁଢ଼ା ହେଲେଣି ମାଇପ ଯିମିତି କହିବ ସିମିତି ତ ଘରସଂସାର କରନ୍ତେ । ଇମିତି ଉତ୍‌ପଣ୍ଡ କେଣେ ହୋଉଚନ୍ତି ଲୋ ! ଦ୍ୱିପ୍ରାଣୀ ଏକାମନ ନହେଲେ କୋଟେ ହେଲେ ସଂସାର ଚଳେ କଲେ ? ତୁଳସୀ ମା ପିନ୍ଧିବା ଲୁଗାରୁ ଅଧେ ଚପୁଡ଼ି ପକେଇ, ବଦଳୋଉ ବଦଳୋଉ କହିଲା, ନାଇଁ ନାଇଁ, ବୁଢ଼ାନାଁରେ କିଏ କେତେ କହିଲେ ମୁଁ ସତ କରିବ ନାଇଁତ । ତା ନନା କହୁଥିଲେ ନାତିଟା ମଦ ଖାଇକରି ଦଶହଜାର ସାରି ଦେଲାଣି, ମୋଟର କିଣିଥିଲା କିଏ ନେଇଗଲା ।

ପୋଖରୀ ହୁଡ଼ା ଉପରୁ ଖସି ଆସୁ ଆସୁ ଚନ୍ଦ୍ରାଦେବୀ କହିଲେ, କୋ ଅଳପେଇଷିଆ ଉତେ କହୁଥିଲା ଲୋ ତୁଳସୀ ମା ! ମୋ ନାତି ସବୁ ଉଡ଼େଇ ଦେଲାଣି ବୋଲି । ମୋ ନାତି କା ହାଣ୍ଡିରୁ ନା ଥାଳରୁ ଖାଇଲା; ଆଉ କୁଣ୍ଡୀମାନଙ୍କର ଆଉ କିଛି ଜାବକା ନାଇଁ ଯେ, ମୋ ନାତି ଚିନ୍ତା ଲାଗିଛି । ଚନ୍ଦ୍ରାଦେବୀ କଥାମାସ୍ତ ଅକଥାମାସ୍ତ, ଯେତେ ଶବ୍ଦ ଆସିଲା ସେତିକି ଗାଳିଦେଲେ । ତୁଳସୀ ମା ଛାଡ଼ିବା ପାତ୍ରୀ ନୁହେଁ ସେ ବି ଝାଡ଼ିଦେଲା ଦୁଡ଼ାଏ । ଅନନ୍ତର ସ୍ତ୍ରୀ କାନ୍ଧରେ ଗୁଡ଼ାଏ ଲୁଗା, କାଖରେ ହାତରେ ଯୋଡ଼ିଏ ଗରା ଧରି ପାହାଚ ଉପରୁ ଓହ୍ଲେଇ ଆସୁଥିଲା । ଚନ୍ଦ୍ରାଙ୍କ ଦୃଷ୍ଟି ପଡ଼ିଗଲାକ୍ଷଣି, ଗର୍ଜନ କରି କହିଲେ, ଅନନ୍ତଆର ପୁଅ ବରଜିଆ । ମାଙ୍କଡ଼ ପରି ଏତେ ଖଣ୍ଡେ ହେଇଚି, ମୋଟରରେ ବସିବ ! ଯୁ' ବାପକାଳେ ମୋଟରରେ ବସିଥିଲୁ ତ ! ଅଳପାଇଷିଆ ଜଳଜଳା ନାଗି ମେ. ପିଲା ମୋଟର ଢକଦେଇ ଚଳିଆସିଲା । ଅନନ୍ତର ସ୍ତ୍ରୀ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇ କହିଲା, ଯୋଉ ଜଳଜଳା ମୋ ପିଲାକୁ ଗାଡ଼ିରୁ ଠେଲି ପେଲି ଧାଉଆ କରିଚି, ତା ହାତ ଗୋଡ଼ ଛିଡ଼ିପଡ଼ୁ । ମୋ ପିଲା କାହାର କିଛି କରିନାହିଁ ।

ଚନ୍ଦ୍ରାଦେବୀ ବିଦ୍ରୂପ ହସ ହସି କହିଲେ, ହୁଁ ଲୋ ହୁଁ ! ଘୁଷୁରି ପଲ ପରି ବର୍ଷକେ ଜନମ କରୁଚୁ ଘର । ହାତ ଛିଡ଼ିବ, ଗୋଡ଼ ଛିଡ଼ିବ । ତମ ଘରତା ମାଇପ ଦିଜଣ ଅନ୍ଧ ଅନ୍ଧୁଣୀ ହୋଇ ଭିକ ମାଗି ବୁଲିବ । ପୁଅମାନେ ବାଟ କଡ଼େଇ ନେବେ । ମରିବ ନାଇଁ ଭିକ ମାଗିବ, ଭିକ ମାଗିବ । ଅନ୍ଧ ଅନ୍ଧୁଣୀ ହୋଇ ମାଗିବ— ଯେଉଁ ଆଖିରେ ମୋ'ଧନ ଉପରେ ଆଖି ପକେଇଥିଲ, ସେଇ ଆଖି ଫୁଟିଯିବ, ଭିକ ମାଗିବ !

ଚନ୍ଦ୍ରାଦେବୀ ନଦୀରୁ ଆସିଲାବେଳକୁ କାର୍ତ୍ତିକ ବାଡ଼ିବରଣ୍ଡା ତଳର କୂଅ ପାଖରେ ଚାଉଳ ଧୋଉ-ଧୋଉ ଗୀତ ଗାଉଛି—ପୂର୍ବ ପାଖର ଭଙ୍ଗା ମାଟି କାନ୍ଥ ଉପରେ ନଇଁ ହୋଇ ରହିଛି ଶିଶୁଆ ଘର ପିଜୁଳି ଗଛଟା । ଶିଶୁଆ କାର୍ତ୍ତିକର ସ୍ୱର ଶୁଣି ଆଶାପୂର୍ଣ୍ଣ ମନରେ ଆସି ଠିଆ ହୋଇଥିଲା । ଦୂରରୁ ଚନ୍ଦ୍ରାଦେବୀଙ୍କୁ ଦେଖି ଘର ଅଡ଼କୁ ଚାଲିଗଲା । ଚନ୍ଦ୍ରା କାର୍ତ୍ତିକର ମୁହଁକୁ ସନ୍ଦେହ ଦୃଷ୍ଟିରେ ଚାହିଁ କହିଲେ, ଘରେ ନାଳ ମୁହଁରେ ଚାଉଳ ଧୋଇଥାନ୍ତୁ । ଏଇଠିକି ଆସି କି ନାଟ କୀର୍ତ୍ତନ ଲଗେଇଚୁରେ, କାର୍ତ୍ତିକ ? କାର୍ତ୍ତିକ ଚମକି, ଚାହିଁଦେଇ ମିରିକରେ ଚାଉଳ ପାଛିଆଟା ଧରି ଚାଲିଗଲା ।

ଚନ୍ଦ୍ରା କୂଅ ପାଖର ବାଉଁଶ ଅଳଗୁଣିରେ ଲୁଗା ଶୁଖେଉଥିଲେ । ଶିଶୁଆମା ପିଜୁଳି ଗଛ ପାଖକୁ ଆସି ଡାକିଲା, ଭାଉଜ ! ନଦୀଆଡ଼ୁ ଆସିଲଣି ? ପୁଣି ଟିକିଏ ରହି କହିଲା ନାଇଁ ଏ ଭାଉଜ ! ତମର ଏ ପଡ଼ିଶା ଘରେ ମୁଁ ଆଉ ରହି ପାରିବିନାହିଁ, ଭଗବାନ ଏଠୁ ମୋର ପଡ଼ି ଉଠେଇ ଦେଲେଣି ।"

ଗାଁରେ ସ୍ତ୍ରୀ ମହଲରେ ଶିଶୁଆ ମାର ନାଁ ଅଛି । ଶିଶୁଆ ମା ସ୍ୱାକଥା ତା ପାଖରେ କହି ଯିମିତି ଭାବରେ ଲଗେଇ ଯୋଟେଇ ଜାଣେ, ମିଛକୁ ସତ ସତକୁ ମିଛ ମଧ୍ୟ କରିଜାଣେ । କଥା ଶକ୍ତିରେ ନିଜର ଲାଭ ଦେଖିଲେ ଶାଳଗ୍ରାମକୁ ଶିଳା ବୋଲି ପ୍ରମାଣ କରିଦେବାକୁ ପଛେଇବା ଲୋକ ସେ ନୁହେଁ । ଶିଶୁଆ ମା ଘରର ଦାଣ୍ଡ ପାଖରେ ବୃଟଶାଳୀ ଅବଧାନ । ବୟସ ତିରିଶି ଭିତରେ । ମୋଟା ସୋଟା, ବଳିଷ୍ଠ ଦେହ । ତଥାପି ଦାଉଳ ବୋଝେଇ କରି ଖାଇବା କଷ୍ଟ ବୋଧକରନ୍ତି ।

ସୁତରାଂ ସ୍ୱତ ଓଲଟା ଶିଶୁଆ ମା ନିଜ ସେବେଇରେ ସେବେଇ କରିଦିଏ । ଇସ୍କୁଲ ଘର ଆଉ ଶିଶୁଆ ମା ଘର ମଝିରେ ରହିଛି ସିଝ୍ ବାଡ଼ । ଶିଶୁଆ ଘରେ ରହିବାଠୁ ତା'ମା ଦଶଣା ପଇସା ଦେଇ ବାଉଁଶ ଗୁଣ୍ଡରେ ବାଡ଼ କରି ଦେଇଥିଲା । ପାଣି ପବନରେ କ୍ଷୟ ହୋଇ ହୋଇ ତାଁକୁ ମାତ୍ର ରହିଛି । ଅବଧାନେ ଏକା ମଣିଷ । ପିଲାଏ ଆଣିଦେବା ଚାଉଳ, ଡାଲି, ପନିପରିବା, ଦୁଧ, ଗୁଡ଼ ପ୍ରଥମେ ଅଳ୍ପ, କ୍ରମେ ଟିକିଏ ବେଶି, ତା ପରେ ସବୁ ଶିଶୁଆ ଘରକୁ ପଠେଇ ଦିଅନ୍ତି । ଶିଶୁଆ ମା' ସେବେଇ କରି ଥାଳରେ ବାଢ଼ି, ଅବଧାନଙ୍କ ଶୋଇବା ଘରକୁ ଆଣିଦିଏ । ଅବଧାନେ କେତେ ଥର ଭାବନ୍ତି କହିବେ, "ମାଉସୀ ବୁଢ଼ୀ ମଣିଷ, ଆଉ କେତେ କତ ଆଣିଦବ ।"

ଅନ୍ତର୍ଯ୍ୟାମୀ ଶିଶୁଆ ମା' ମାଷ୍ଟ୍ରଙ୍କ ମୁଖଭାବରୁ କଣ ବୁଝେ କେଜାଣି ଆପେ ଆପେ କହିପକାଏ, ଶିଶୁଆକୁ ପଠେଇଲି ଯାଲେ ମା, ଥାଳଟା ଧୋଇଦେଇ ପଳାଆସିବୁ । ଲାଜ ! କି ଲାଜମ ' ଯାଠୁ ଉପକାର ପାଇଲୁ ତା କାମ କଲୁ । ଲାଜ ଗୋଟେ କି' କଥା । ତମ ଦୟାରୁ ଅବଧାନ ପୁଅ, ଆମର ଆଉ ଚିନ୍ତା ନାହିଁ ।

ଶିଶୁଆ ମା କାର୍ତ୍ତିକ ଆଗରେ ଏଇ ଭଳି କଥା କେତେ ଥର କହିଛି । କଥାଛଳରେ କେତେ ଥର ହାତ ପାତିଛି । ବିଧବା କନ୍ୟାର ରୂପ ଯୌବନର ବିନିମୟରେ ଶେଷ ଜୀବନରେ ସୁଖରେ ବଞ୍ଚିବା ପାଇଁ ପୁଞ୍ଜିପଣ୍ଟା ସାଇତି ରଖିବାକୁ କଳ୍ପନା କରିଛି । କିନ୍ତୁ କାର୍ତ୍ତିକ ତାର ସବୁ ପ୍ରସ୍ତାବ, ସବୁ ପ୍ରଚ୍ଛନ୍ନ ଇଙ୍ଗିତ ବୁଝିପାରି ମନେ ମନେ ମାତୃହୃଦୟର ନୀଚ ଭାବକୁ ଶତବାର ସହସ୍ରପ୍ରକାର କରି ନିନ୍ଦା ଦେଇଛି । ସେଥିପାଇଁ ଶିଶୁଆ ମା ସହିତ କାର୍ତ୍ତିକର କଥା ଏପରିକି ମୁହଁ ଦେଖା ବି ବନ୍ଦ ହୋଇଯାଇଛି ।

ଅବଧାନଙ୍କ ପ୍ରତି ଶିଶୁଆର ଅନୁରାଗ ଭାବ ଦେଖି ଶିଶୁଆ ମା'ର କ୍ରୋଧଟା ଯାଇ ପଡ଼ିଲା କାର୍ତ୍ତିକ ଉପରେ । ସେ ଭାବିଲା, କାର୍ତ୍ତିକକୁ ଶିଶୁଆ ଆଖି ଆଗରୁ ଦୂର କରିଦେବାକୁ ହେବ । ସେଥିପାଇଁ କାନ୍ଦ କାନ୍ଦ ହୋଇ ମୁହଁ ଆଖି ପୋଛି ଚିନ୍ତାଦେବୀଙ୍କୁ କହିଲା, ନାଇଁହେ ଭଉଜ, ଆଉ ଏଠି ମୋର ଥାନ ନାହିଁ । ତମର ଏ କାର୍ତ୍ତିକ ମୋ ଶିଶୁଆକୁ ରଖେଇ ଦୋହନ । ରକ୍ତ ମାଉଁସର ଦେହ, କେଉଁ ଦିନ ଗୋଡ଼ ଖସିଗଲେ ସଂସାର ସରିବ । ମାମୁଘର ଗାଁକୁ ପଳେଇବି ବୋଲୁଚି । କାର୍ତ୍ତିକକୁ କଡ଼େଇ ଦେବାକୁ ମୋର କୋଉ ଶକତି ଅଛି । ଭାଇନା ତ ତାକୁ ଇଷ୍ଟଦେବତା କରି ରଖିଛନ୍ତି !

"ଆହା, ଏଇ କଥାକୁ ଡରୁଛୁ କିଆଁ । ଏଁ, ରହିଥା, ଖଦା ମୁଣ୍ଡାକୁ କାଲି ସକାଳୁ ତଡ଼ିଦେବି । ଇମିତି ପୋଡ଼ା ଗୁଣ ଥିଲା ଏ ପୋଡ଼ାମୁହାଁର, ମୁଁ ତ ଜମାରୁ ଜାଣି ନଥିଲି ।"

ହଁ ହେ ଭଉଜ ! କହିବି ବୋଲି ଏ ଆଖିର ଲୁହ ସେ ଆଖିରେ ମରିରହୁଛି । ନିରସ୍ତ ମଣିଷ, କାହାକୁ କହିବି, କିଏ ଶୁଣିବ । କଥାଟା ଶେଷ କରୁ କରୁ ଫିସ୍ ଫିସ୍ କରି କହିଲା, ଏଇ କୂଅଁ ପାଖଟାରେତ ସବୁବେଳଟାରେ ରହୁଛି । ଛନକା ପୋଡ଼ାମୁହାଁ ଛନ୍ଦକଥା, ଗୀତର କେତେ ଛଟା ଦେଖାଉଚି । ଅପେକ୍ଷାକୃତ ସ୍ୱରଟାକୁ ଟିକିଏ ଚଡ଼େଇ ଶିଶୁଆମା କହିଲା, ତମେ ରକ୍ଷା ନ କଲେ ମୋ ଶିଶୁ ଭାସିଯିବ ହେ ଭଉଜ !

"କାନ୍ଦେନା ଲୋ ଶିଶୁମା । ପୋଡ଼ାମୁହାଁକୁ ତଡ଼ିଦେବି ଯେ, ବାଟ ପାଇବ ନାହିଁ ପଳେଇବ ।" ଚିନ୍ତାଦେବୀ ଘରଆଡ଼କୁ ଯାଉ ଯାଉ ଭାବିଲେ, ଶିଶୁମା ଯାହା କହିଲା ମିଛ ନୁହେଁ । ପୋଡ଼ାମୁହାଁକୁ କି ମୋହ ଲାଗିଛି, ମୁହୂର୍ତ୍ତେ ତ କୂଅ ପାଖ ବାଡ଼ପିଣ୍ଡା ଛାଡ଼ୁନା ନାହିଁ । ନନାକୁ ଆଜି ଏକା ତଡ଼ିଦେବି ।

କାର୍ତ୍ତିକ ଓଧାଣିରେ ଚାଉଳ ଡାଲିଦେଇ, ଡାଙ୍କୁଣି ଦେଇ ଗରମପାଣି ଗ୍ଲାସଟା ଧରି ଗଲା ଗୋପାଳଙ୍କୁ ଔଷଧ ଦବବୋଲି । ଗୋପାଳ ଔଷଧ ଖାଇବା ଭୁଲି, ରୋଗପୀଡ଼ା ଭୁଲି, ଦେଶର ନାରୀ ଜାତିର ସ୍ୱାଧୀନତା ସମସ୍ୟା ସମ୍ବନ୍ଧରେ ଲେଖୁଛନ୍ତି ନାଟକ । ନାଟକର ନାୟକ ବୁଲି ବୁଲି ଗୀତ ଗାଇ ପ୍ରଚାର କରୁଛନ୍ତି । ସେ କାର୍ତ୍ତିକକୁ ଦେଖି ଅଭ୍ରାନ୍ତ

ଉତ୍ସାହରେ କହିଲେ, ପଢ଼ିଲୁ କାର୍ତ୍ତିକ ଏଇ ଗୀତଟି । କାର୍ତ୍ତିକ ପାଣିଗ୍ଲାସଟା ଟେବୁଲ ଉପରେ ରଖିଦେଇ ଖାତାଟା ଧରି ପଢ଼ିଲା ।

ସ୍ୱାଧୀନ ହେଉ ଦେଶ ଆମର ସ୍ୱାଧୀନ ହେଉ ଗାଁଆଁ
ପର ଅଧୀନ ବୋଲି ଏ ଜାତି ରହିବ କପାଁ ନାଁଆ ।
ଅବଳା ନାମେ ଅବମାନନା ନଦିଅ ନାରୀଗଣେ
ସବଳା ହେଲେ ସକଳ ନାରୀ ଧନ୍ୟ ହୋଇବା ଆମେ ।
ସବଳା ହେବେ ଜନନୀ ଯେବେ ସୁତେ ହୋଇବେ ବଳୀ
ପଶିବେ ନାହିଁ ଘର କୋଣରେ ଶତ୍ରୁକୁ ଆଉ ଡରି ।
ସମଭାବରେ ସୁଶିକ୍ଷା ଦିଅ ସୁତ ସୁତାଙ୍କୁ ସବେ
ସ୍ୱାଧୀନ ହେବ ଦେଶ ଆମର ଭୁଲିବା ଆମେ ଗର୍ବେ ।
ସ୍ୱାଧୀନ ହୋଇ ସକଳ ନାରୀ ହୋଇବେ ଜଣେ ଜଣେ
ଜନନୀ ଜାତି ଶିକ୍ଷିତା ହେଲେ ପାଇବା ଶିକ୍ଷା ଆମେ ।

କାର୍ତ୍ତିକ ଗୀତ ଗାଇସାରି କହିଲା, ଆଜ୍ଞାଁ ! ସ୍ତ୍ରୀ ମାନେଁ ଶିକ୍ଷିତାଁ ହେଇଁସାରିଲାଁ ପରେଁ ସିନାଁ ସ୍ୱାଧୀନତାଁ ହେଲେଁ ହବଁ । ଶିକ୍ଷାଁ ଦେବାଁ ପାଇଁ କିଛିଁ ବ୍ୟବସ୍ଥାଁ ନକରିଁ ସ୍ୱାଧୀନତାଁ ଦେଲେଁ ଆମଁ ମାଆଁ ସିମିତିଁ ସ୍ୱାଧୀନତା ପାଇଁ ନାତିକଁ ସ୍ୱାଧୀନତା ଦେଇଛନ୍ତିଁ, ସେଇଁ ଅବସ୍ଥାଁ ହବଁ ।

ଗୋପାଳ କାର୍ତ୍ତିକର କଥା ଶୁଣି ଆମୋଦରେ ହସି ହସି କହିଲେ, କାର୍ତ୍ତିକ ! ଅନେକ ପୁରୁଷ ଘରର କୁଟୁମ୍ବର, ସେଥି ସଙ୍ଗେ ନିଜର ଅନେକ ପ୍ରକାର କ୍ଷତି କରୁଛନ୍ତି । ତଥାପି ସେମାନଙ୍କୁ ସ୍ୱାଧୀନତା ଦିଆଯାଉଛି । ତୋର ମା’ ଜଣେ ମାତ୍ର ସ୍ତ୍ରୀ ମୋ ଉପରେ ଅତ୍ୟାଚାର କରୁଛନ୍ତି ବୋଲି ସବୁ ସ୍ତ୍ରୀ ଦୂଷଣୀୟ ହେବେ, ଏ କଥା ତ ସମର୍ଥନ କରିପାରୁ-ନାହିଁ । କାର୍ତ୍ତିକ ଗୀତାଟାକୁ ଆଉଥରେ ପଢ଼ି କହିଲା, “ଆପଣ ଯୁକ୍ତିକଲେ ମୁଁ କୋଠେ ଜବାବ ଦେଇପାରିବି ଆଜ୍ଞା ? ମୁଁ କହୁଛି କଣ କି ଆଜ୍ଞା, ସ୍ତ୍ରୀ ହେଉ କି ପୁରୁଷ ହେଉ, ସ୍ୱାଧୀନ ହେଲେ ଘର ଭାଙ୍ଗିଯିବ । ଦେଖନ୍ତୁ କୋକବାବୁ ସ୍ୱାଧୀନ ହେବାରୁ—”

“ସେଆଡ଼େ ଚୁଲି ଉପରେ ହାଣ୍ଡି ବସିଚି, ଏଆଡ଼େ ଆସି ବସିଚୁକରେ କାର୍ତ୍ତିକ—”

କାର୍ତ୍ତିକ ହଠାତ୍ ଚନ୍ଦ୍ରାଦେବୀଙ୍କୁ ଦେଖି ସସ୍ତ ହୋଇ ଉଠି ଯାଉଥିଲା । ଚନ୍ଦ୍ରା କହିଲେ, ବେହେରମୁହାଁ ମୋ କୋକ ନାଁରେ ନଗେଇ ପୋଟେଇ କହୁଥିଲୁ ଯେ ମୁଁ ସବୁ ଶୁଣିଛିରେ । ପୋଡ଼ାମୁହାଁ ମୋ ହାଣ୍ଡିରୁ ଭାତ ଖାଇ ମୋରି ନିନ୍ଦା ଗାଇ ବୁଲୁଚୁ । ଖନା ଜଳା, କୁକୁରର ଖାଇ ପ.ଣ୍ଡିବ ଘର ଚଲାରେ ବଢ଼ୁଚି ।

“ଅକାରଣଟାରେ କାହିଁକି ଆଜ୍ଞା ଗାଳି ଦେଉଛନ୍ତି—”

“ଅକାରଣ ? ମୋର କାନ ଅଛିରେ । ମୁଁ ଆଉ ଭଲ ଲୋକ ହୋଇନ । ହାଇ ମାଇଲେ ଦାନ୍ତଗଣି ଛାଡ଼ଦେବା ମଣିଷ ମୁଁ । ମୋର, ମୋ’ କୋକର କଥା ସବୁ ଏଠି ଫୁପୁ ଫୁପୁ କରି କଉଥିଲୁ । ତୁ ଖନା ପୋଡ଼ାମୁହାଁ ଏ ଘରୁ ଯିବୁ, ମୁଁ ଜଳ ସରସ କରିବି । ଖନାଜଳା, ମୁଁ ସରଯିବାରୁ, ମା ଇମିତି କରୁଛନ୍ତି, ମା ସିମିତି କରୁଛନ୍ତି, ଦିନରାତି କଉଚି ।

“କାର୍ତ୍ତିକ କେବେ ତୁମ ନାଁରେ କୌଣସି କଥା କହୁନାହିଁ, ଅନୁବୋଉ । ବୃଥାରେ ତା ଉପରେ ରାଗୁଛ କାହିଁକି ? ସେ ଲୋକଟି ଅତି ଅକପଟୀ ବୋଲି ଆମ-ମାନଙ୍କର ଦୌରାତ୍ମ୍ୟ ନିର୍ବିକାର ମନରେ ସହିଯାଉଛି ।”

ତମେ ତାକୁ ବଢ଼େଇ ଦେଇଛ ଯେ ସେ ସିମିତି ହେଉଚିନା । ନହେଲେ ରାନ୍ଧୁଣିଆ ମୁଣ୍ଡାର ଏଡ଼େ ସାହାସ ହୁଅନ୍ତା କୁଆଡ଼ୁ । ଆରେ କାର୍ତ୍ତିକ ଗୀତ ଶୁଣିବୁ । ଗୁଣମନ୍ତ ରାନ୍ଧୁଣିଆ, ଗୀତ ଶିକେଇବା ଗୁଣ ଏବେ ଦେଖାଉଚି ।

“କାର୍ତ୍ତିକର କୌଣସି ଦୁର୍ଗୁଣ ମୁଁ ତ ଦେଖୁନାହିଁ ଅନୁବୋଉ—”

“ଆଉ ଅନୁବୋଉ ଅନୁବୋଉ କରି ସୁଆଗ ଦେଖେଇ ହୁଅନାଇଁ । ସେ କାର୍ତ୍ତିକକୁ ଏ ଘରୁ କାଢ଼ିବ ନା ମୁଁ ଏ ଘରୁ ଯିବି । ସବୁ ଦୁର୍ଗୁଣ ସଇଥିଲି । ଏକଥା ଆଉ ସହିବି ନାହିଁ । ପଡ଼ିଶା ଘରେ ବିଧବା ପ୍ରାଣୀ ଧାନ କୁଟି ପେଟ ପୋଷୁଚି । ତାକୁ ନାଶ କରିବାକୁ ଚୋର

ମନ ବଳୁଛି କମିତି ରେ ଖନା ? ନା ! ଆଉ ମୁଁ ଏ ଖନା ଜଳାକୁ ଘରେ ରଖିବ ନାହିଁ । ସେ ଯିବ, ନଇଲେ ମୁଁ ଯିବ ।"

"କାର୍ତ୍ତିକ ଶେଷର କଥା ପଦକ ଶୁଣି ବିଚଳିତ ହୋଇ କହିଲା, "ଆପଣ କାହିଁକି ଯିବେ ଆଜ୍ଞା । ଭାତ ଫିଙ୍ଗିଲେ କାଉ ଅଭାବ ହେବେନାହିଁ । ଭାତ ପାହିଲେ ଆପଣ ଦଶଟା ଚାକର ଆଣିବେ, ମୁଁ ଯାଉଛି ।' କାର୍ତ୍ତିକ ଆସ୍ତେ ଆସ୍ତେ ଆସି ଗୋପାଳଙ୍କ ପାଦ ପାଖରେ ମଥାରଖି ଜଡ଼ିତକଣ୍ଠରେ କହିଲା, "ବହୁତ ଦିନ ରହିଗଲି । ବହୁତ ଅପରାଧ କରିଛି । କ୍ଷମା ଦେବେ ଆଜ୍ଞା, ଯାହା କିଛି ଶିଖିଛି ସବୁ ଆପଣଙ୍କ ପାଖରେ ।"

କାର୍ତ୍ତିକର ପଛେ ପଛେ ଚନ୍ଦ୍ରାଦେବୀ ଚାଲିଗଲେ । ଗୋପାଳ କାର୍ତ୍ତିକକୁ ଡାକିବାକୁ ଇଚ୍ଛା କରି ମଧ୍ୟ ଡାକି ପାରିଲେ ନାହିଁ । ତାଙ୍କର ଆବେଗ ଅବରୁଦ୍ଧ ଗଳା ଭିତରୁ, କାର୍ତ୍ତିକ ଡାକଟି ମଧ୍ୟ ଫୁଟି ବାହାରି ପାରିଲା ନାହିଁ । ସେ ବାଷ୍ପାକୁଳ ଦୃଷ୍ଟିରେ ବାହାରକୁ ଚାହିଁ ଥିଲେ, ସେଇ ବାଟ ଦେଇ ତାର ଟ୍ରେଙ୍କ ପୁଟୁଳିଟି ହାତରେ ଧରି ମଥା ନୁଆଁଇ ଚାଲିଗଲା କାର୍ତ୍ତିକ । ଚାଟଶାଳୀର ଦୁଇ ତିନଟି ପିଲା ଅନେଇଁ କୌତୁକ ବିସ୍ମୟରେ ଥରେ କାର୍ତ୍ତିକ ଆଡ଼କୁ, ଥରେ ଗୋପାଳଙ୍କ ଆଡ଼କୁ ଅନେଇଁ ପରସ୍ପର ଅସ୍ପଷ୍ଟ ଭାଷାରେ ଗୋପାଳ ଆଉ କାର୍ତ୍ତିକ ଉଦ୍ଦେଶ୍ୟରେ ଆଲୋଚନା କରି କରି ଚାଲିଗଲେ ।

ଗୋପାଳ ବିଶ୍ୱାସ କରିପାରିଲେ ନାହିଁ । ସତରେ କାର୍ତ୍ତିକ ତାଙ୍କୁ ଏକାନ୍ତ ଏକା କରି ଦେଇ ଚାଲିଗଲା । କିନ୍ତୁ ବିଶ୍ୱାସ ନ କରିବା ଉପାୟ ନାହିଁ । କାର୍ତ୍ତିକ ସେ ଏଇ କେତେ ସମୟ ଆଗରେ ଗରମ ଜଳ ଗ୍ଲାସଟା ଧରି ଆସିଥିଲା ଔଷଧ ଦେବ ବୋଲି, ଗ୍ଲାସଟା ଠିକ୍ ସେଇପରି ଥୁଆହୋଇଛି । ଔଷଧ ଖାଅ ବୋଲି କହିବାକୁ ଆଉ କେହିନାହିଁ । ଟେବୁଲ ଉପରେ କାର୍ତ୍ତିକ ପଢ଼ୁଥିବା ଖାତାଟା ଦେଖି ତାଙ୍କର ଭାବନା ହେଲା, କାର୍ତ୍ତିକ ଆଉ ନାହିଁ । କାର୍ତ୍ତିକ ତାର ମାଲିକଠୁ ତଡ଼ାଖାଇ ଚାଲିଯାଇଛି । କାର୍ତ୍ତିକକୁ ମୁଁ ରଖିପାରିଲି ନାହିଁ । ତାକୁ ରଖିବା ଶକ୍ତି ମୋର ନାହିଁ ।

ଗୋପାଳଙ୍କ ଓଷ୍ଠପ୍ରାନ୍ତରୁ ଫୁଟି ଉଠିଲା ଉତ୍କଟ ବ୍ୟଙ୍ଗହସ । ସେ ଭାବିଲେ, ମୁ ପୁଣି ଗୋଟାଏ ମନୁଷ୍ୟ । ମୋର ଆଉଥରେ ଗୋଟାଏ ମନୁଷ୍ୟତା ଅଛି । ମୁଁ ଲେଖୁଛି ଜାତିର ସ୍ୱାଧୀନତା ସୁଖ ସମ୍ବନ୍ଧରେ ନାଟକ, ଉପନ୍ୟାସ , କିନ୍ତୁ ଧିକ୍ ମତେ । ମୋର ନିଜର ସ୍ୱାଧୀନତା ନାହିଁ । ନିଜର ଅଭିରୁଚିରେ ନିଜେ କରି ପାରୁନାହିଁ କୌଣସି କାର୍ଯ୍ୟ ।

## ଏଗାର

ଶିଶୁଆ ମା ଚନ୍ଦ୍ରାଙ୍କ ଗୋଡ଼ରେ ହାତ ବୁଲେଇ ଦେଇ ଦେଇ କହିଲା, ଭଲକଲ, ଆଜ୍ଞାକଲ ! ସବୁକଥା ନଗେଇ ଯୋଟେଇ ମନ ଫଟେଇ ଦୋଉଥେ । ହଗା ପାଳର ପୁଅ ବିଶୁଟି ଯୋ ସୁନ୍ଦର ସୁଧାରିଆଛି, ମଲା ମାଛିକି ମରେ ବୋଲିବ ନାଇଁ । ଘର କଥା ଘରେ ରଇବ, ସେଇଟିକି ରଖ । ଚନ୍ଦ୍ରା କହିଲେ, ଗଲୁ ଡାକି ଆଣିବୁ ।

ଅନୁ ଦୁଆର ମୁହଁରୁ କହିଲା, ବୋହୂ ପିଲାଟାର ଦେହ ସୁଖନାଇଁ ବୋଲି ଶୁଣିଲି ଯେ—

ଚନ୍ଦ୍ରା ପଚାରିଲେ "ସାଥିରେ କିଏ ଆସିଛନ୍ତି ?"

"ଦୁର୍ଲଭ ଆସିଛି ।"

"ହଁଲୋ ଝିଅ, ବସେ ବସେ । କି ଚୁଲିପିଲା ଜନମହେଲା, ବୋହୂଟା ହାଡ଼ ଖିମା ହେଇଗଲାଣି ।"

"ବରଜ ବଇଦ କହିଲେ, ମେଥିମୋଦକ ଖୁଆଇଲେ ଭଲ ହେବ । ଅନୁ ପୁତ୍ରବଧୂର କଥା ଭୁଲିଯାଇ କହିଲା, ହଇଲୋ ବୋଉ, ବାପା ଆଉଥରେ ସେ ବଶିପୁରର ଭୂମି ଖଣ୍ଡିକ ସେବା ସଦନ ନା କଣ ଚୁଲି ସଦନ କୋଠେ ହେଇଛି ସେଇଠିକି ଦେଇ ପକେଇଲେ ? ନାଇଁ କରିଦେଲେ ତ ମୋ ପିଲାକୁ ମୋ ଘରକୁ ନେଇଯିବି ଗଲି । ତମେ ସବୁ ଏତେ ହୀନ ଦେଖୁଚ କାହିଁକି ?

"କୋଳ ମୋର ବନ୍ଧଥାଉଲେ, ଅନୁ ! ତାର.ସେ ଭିକମାଗି ଖାଇବ—"

"ହଇଲୋ ବୋଉ, ବାପା ତ ଆଉ କୋଉଦିନ ହେଲେ ମୁଣ୍ଡଟେକ କଥା ଆଉ କହୁନାହାନ୍ତି, କି ରୋଗ ହେଲାଲୋ ?

"ନାଆଁ ରୋଗ, ଭୁଲାରୋଗ, ତାଙ୍କର ଘୋଡ଼ା ବୁଦ୍ଧିଟା ପ୍ରିମିତି ହେଲାଣି । ସବୁକାଳେ କାଗଜ ଗୁଡେ ଧରି ମୁଣ୍ଡଟା ମାରିଦେଇ କର କର କରୁଥାନ୍ତି । ଏବେ ସେଇ ଘୋଡ଼ାବୁଦ୍ଧି । କାର୍ତ୍ତିକ ଘୋଡ଼ାମୁହାଁ ସବୁକଥା, ଯୋଗଷ ଫୁଟିବା କଥାଟା ତାଙ୍କ ଆଗରେ ନଗୋଇ ଯୋଟେଇ କଇଲା ବୋଲି ଖନା ଜନାଙ୍କୁ ଛାଡ଼ିଦେଲାଯେ, ସେଇ ଦିନଠୁ ଆଉରି ପ୍ରକୃତିଛଡ଼ା ହୋଉଚନ୍ତି । ଘୋଡ଼ା ରୋଗତ ବଢ଼ ଘଷା ହୋଇଗଲାଣି, ଔଷ ମଉଷଧି ଜମାରୁ ଗୁଣ ଦୋଉନ—"

"ନାଇଁଲୋ ବୋଉ, ପର କଥା ଶୁଣି ପଇସାଗୁଡ଼େ ଖରଚ କରେନା—"

"ମୁଁ ଖରଚ କରିବି କାଆଁ, ତାଙ୍କର ଘୋଡ଼ା ବ୍ୟାଧି ଆଉ ଭଲ ହବ ଯେ ମୁଁ ପଇସା ଖରଚ କରିବି ।"

ହଁ, ମନେ ପଡ଼ିଲା ଏବେ । କେତେ ଦିନହେଲା ସେ କାର୍ତ୍ତିକଟା ଇମିତି ସୁଁ ସୁଁ ଫୁଁ ଫୁଁ କାଇଁକି ହେଉଥାଏ କେଜାଣି ।

"ଖାଲି ସେତିକି କଲେ, ଯୋ ଘୋଡ଼ା ବୁଦ୍ଧି ଧଇଲା ! ଏ ପଡ଼ିଶାଘର ଶିଖିଆ—" ଚନ୍ଦ୍ରା ବାକିଟିକ ଅନୁ କାନପାଖରେ ଫିସ ଫିସ୍ କରି କହିଦେଲେ— ।

ଅନୁ ବିସ୍ମୟରେ ଆଖି ଟେକି କହିଲା "ଏଁ । ଇମିତି କଥା ଏବେ କରିଚି କଲେ ? ଘରୁ ଗଲା ଭଲ ହେଲା, ଘରେ ଅବସ୍ଥସରେ ବୋହୂଟା ଅଛି—"

ଶିଖିଆ ମା ବଶୁକୁ ଧରି ଆସି ତାଙ୍କୁ ଦେଖେଇ କହିଲା, ହେଇଟିହେ ଭାଉଜ, ଗାହାଣୀ ରାନ୍ଧୁଣିଆଁଙ୍କୁ ମାସକୁ ଚନ୍ଦ୍ର ଟଙ୍କା ଗଣୁଥିଲ । ବଶୁଟି ଗାଧପର ପାଣି କହିବ, ରାନ୍ଧିବ, ସବୁ କରିବ, ଯୋଡ଼ିଏ ଟଙ୍କା ନବ ।

ଅନୁ ଭିତରକୁ ଚାଲିଯାଇଥିଲା ବୋହୂକୁ ଦେଖି । ଚନ୍ଦ୍ରାଦେବୀ ବଶୁର ମୁହଁକୁ ନିରେଖି ଚାହିଁଲେ, ପସନ୍ଦ ନ ଲାଗିଲେ ମଧ୍ୟ ପସନ୍ଦ ଲାଗିଲା ପରି ଭାବ ଦେଖେଇ କହିଲେ, ହ କେଡ଼େ ସୁନ୍ଦର ଭଲ ପିଲାଟି ତ ଘରକଥା ବାହାରେ କାହାକୁ ହେଲେ କହିବୁ ନାହିଁରେ ବଶୁ । ବଶୁ ମୁଣ୍ଡ ହଲେଇ ଦେଲା । ହଁ କି ନାହିଁ ଜଣାଗଲାନି । ଶିଖିଆ ମା ବଶୁକୁ ଛାଡ଼ିଦେଇ ଚାଲିଗଲା । ଚନ୍ଦ୍ରା ବଶୁକୁ ଡାକି ନଦୀକି ପଠେଇଲେ ପାଣି ଆଣିବାକୁ । ଅନୁ ବୋହୂପିଲାକୁ ଦେଖି ଆସି କହିଲା, ମୁଁ ଯାଉଚିଲି ବୋଉ, ଦୁର୍ଲଭୀକୁ ପୋଖରୀ ପାଖରେ ବସେଇଦେଇ ଆସିଚି, ମୋ ଘରେ ସେଆଡ଼େ କେହି ନାହିଁ । ତା ନକାର ଦିଡ଼ ଭଲ ନାହିଁ ।

କାର୍ତ୍ତିକ ଯିବା ପରଦିନ ସକାଳୁ ଗୋପାଳ ଉଠି ଦେଖିଲେ, ତାଙ୍କର ବହିପତ୍ରଗୁଡ଼ାକ ଯୋଉଠି ସେଇଠି ପଡ଼ିଛି । ଘରଟାର ଝାଡ଼ପୋଛର ଛିଣ୍ଡା କାଗଜ ଅଳିଆ କେହି ଉଠେଇ ନାହିଁ । ଟେବୁଲ ଉପରେ ପିଇବା ପାଣିଟିକ ନାହିଁ । ନିଦ ଭାଙ୍ଗିଲା-ବେଳକୁ କାର୍ତ୍ତିକ ତାର ଖନା ପାଟିରେ ଉଚିତ ପ୍ରଶସ୍ତି ସଙ୍ଗୀତ ଗାଉନାହିଁ । ଗୋପାଳଙ୍କ ଅନ୍ତରଟା ହାହାକାର କରି କାନ୍ଦି ଉଠିଲା । କାର୍ତ୍ତିକର ବିଚ୍ଛେଦରେ, କେତେ ସମୟ ପରେ ସେ ଆସ୍ତେ ଆସ୍ତେ ଉଠି ଯାଇ ମୁହଁ ହାତ ଧୋଇ ଖାତାଟା ଧରି ବସିଲେ । କାର୍ତ୍ତିକ ଥିଲାବେଳେ ସକାଳୁ ଖାତା ଧରୁ ଧରୁ ଶେଷରେ ଦୁଇ ଧାଡ଼ି ପଢ଼ି ଶୁଣେଇଦିଏ । ଆଜି ଆଉ କାର୍ତ୍ତିକ ନାହିଁ । ତାଙ୍କର ପ୍ରିୟ ଭକ୍ତ ଚାଲିଗଲା । ସେ ତାକୁ ନିରୋଧ କରି ପାରିଲେନାହିଁ । ଚନ୍ଦ୍ରା ଭିତରକୁ ଆସି ଯେତେଦୂର ପାରିବେ ଗଳାଟାକୁ ରୁକ୍ଷକରି କହିଲେ, ଏ ଗାଧୋଇ ପାଧୋଇ ଯାଉନ ?

"ଅନୁବୋଉ, ଚଷମାଟା ହଜିଯିବାଠୁ ମୁଁ ବଡ଼ କଷ୍ଟ ପାଇଲିଣି । ତୁମକୁ ମୁଁ କେତେ କହିଲିଣି ଚଷମା ଗୋଟିଏ ଆଣିଦେବାକୁ । କହୁଥିଲ ଏ ମାସର ଟଙ୍କାଟାରେ ଆଣିଥାନ୍ତୁ—"

"ତପସ୍ୟା ତପସ୍ୟା କେତେ ହୋଉଚବା । ବୁଢ଼ା ହେଲଣି, ତମର ଏତକ ବୁଦ୍ଧି ନାହିଁ କିଆଁ, ତପସ୍ୟା କରିବ, କାକତ କଣିବ, ଲେଖିବ ପଢ଼ିବ । ଏ ବୁଢ଼ାକାଳେ ଲେଖିବ ପଢ଼ିବ, କୋ' ଚୁଲିକି ସମ୍ବଳ ହବ । ଚୂଲି ଆଉଁସ ଲେଖୁଚ ସେ ଗାମା ଭୂମା କରି ନିତି ଗୋଟେ ଆସି ତକା ପକେଇ ବସିପଡ଼ୁଛନ୍ତି । ଜଣେ ଆସିଲେ ମାଣେ ଘଣିଲେ ହୋଉଥବା ? ଏ ଲେଖା ପଢ଼ାରୁ କି ଖାଇବ, କି ପାଇବ କହିଲ "

"ଅନୁବୋଉ' ଆଜ କହିବାକୁ ସଙ୍କୋଚ ନାହିଁ । କି ବେଦନାରେ ଯେ ମୋର ଅନ୍ତରଟା ବ୍ୟଥିତ ହୋଇଉଠୁଛି ତୁମେ ସେ କଥା କଣ ବୁଝିବ । ଅନୁବୋଉ, ତୁମଠୁ ଅନେକ ପ୍ରକାର ଗଞ୍ଜଣା ସହି ଶାନ୍ତରେ ରହିଛି । ସେଥି ଟିର ଆରାଧ୍ୟ ବାଣୀର ମନ୍ତ୍ର ଜପ କରି ମୁହୂର୍ତ୍ତେ ମଧ ତାଙ୍କୁ ଭୁଲିବାକୁ ଚେଷ୍ଟା କଲେ ମୋର ପ୍ରାଣ ହାହାକାର କରି ଚିତ୍କାରି ଉଠୁଛି । ମୁଁ ଏ ଲେଖା ଛାଡ଼ି ବଞ୍ଚିବ କିପରି, ଅନୁବୋଉ ?"

"ବଞ୍ଚିବ କୋଠେ, ଏକାଥରକେ ପ୍ରାଣ ଛାଡ଼ିଯିବ—"

"ଅନୁବୋଉ, ତୁମେ କିପରି ଏତେ ନିଷ୍ଠୁର ହୋଇ ମତେ ପ୍ରାଣ ଛାଡ଼ିଯିବ ବୋଲି କହୁଛ ? ଶୁଣିବାକୁ ତ ଆଦୌ ମତେ ଭଲ ଲାଗୁନାହିଁ । ଶୁଣିଲେ ତୁମେ ଆଶ୍ଚର୍ଯ୍ୟ ହେବ । ତୁମକୁ ମୁଁ ଏତେ ଭଲ ପାଏ, ଅନୁବୋଉ, ତୁମକୁ ଦେଖିବା ଅବଧି ତୁମକୁ ପତ୍ନୀ ଭାବରେ ସ୍ପର୍ଶ କରିବା ଅବଧି ତୁମର କଦର୍ଯ୍ୟତା, ତୁମର କୁତ୍ସିତତା, ତୁମର ସବୁପ୍ରକାର ରୁଢ଼ତା ଭୁଲି, ତୁମକୁ ମୋର କାବ୍ୟ କବିତା; ନାଟକ ଉପନ୍ୟାସରେ ନାୟିକା ରୂପରେ ଦେଇଛି ସ୍ଥାନ । ତାର ବଦଳରେ ତୁମେ ମୋର ଯେଉଁ ସମୟରେ ରୂପ ଯୌବନ, ଅର୍ଥୋପାର୍ଜନ କ୍ଷମତା ଥିଲା, ସେ ସମୟରେ ଉଦରପୂର୍ତ୍ତି କରାଇ ଉତ୍କୃଷ୍ଟ ଆଉ ରୁଚିକର ଖାଦ୍ୟ ଖୁଆଇଛ ! ଯେଉଁ ସମୟରେ ମୁଁ ମୋର ସମସ୍ତ ଆବେଦନ ଅଞ୍ଜଳି କରି ତୁମରି ପଦତଳେ ଅର୍ପଣ କରି ଦେଉଥିଲି, ସେ ସମୟରେ ତୁମେ ମୋର ଅନ୍ତର ଦେବତାଙ୍କୁ ଅବହେଳା କରି, ସନ୍ତୁଷ୍ଟ କରୁଥିଲ ମୋର ଉଦର ଦେବତାଙ୍କୁ । ମୋର ମନ ହାଏ ହାଏ କରି କାନ୍ଦି କାନ୍ଦି ଶୂନ୍ୟକୁ ଗୋହାରି କରି ଶରି ନିର୍ବାସିତ ହୋଇ ରହିଛି ଔଦାସ୍ୟମୟ ରାଜ୍ୟରେ—"

"କେତେ ତୁଚ୍ଛା କଥାଗୁଡ଼େ ଭଟର ଭଟର ହେଉଚବା ।"

"ଭଟର ଭଟର ହେଉନି ଅନୁବୋଉ, ଅନେକ ଦିନର ସଞ୍ଚିତ ଦୁଃଖଗୁଡ଼ିକ ତୁମ ସମ୍ମୁଖରେ ଥୋଇଦେଉଛି । ହତଭାଗ୍ୟ ମୁଁ, ଖାଲି ଜିହ୍ୱାଟାକୁ ତୃପ୍ତକରି ତୁମର ଦାସାନୁଦାସ ହୋଇ ପଡ଼ି ରହିଥିଲି, ଶେଷ ସମୟକୁ ଦେଖୁଛି, ତୁମରି ଭାଷାରେ ଏଇ ପୋଡ଼ା ପେଟପାଇଁ, ଅନ୍ୟର ଦ୍ୱାରସ୍ଥ ହେବାକୁ ପଡ଼ିବ । ଶେଷରେ ପେଟଚିନ୍ତା କରିବାକୁ ମଧ ମତେ ପଡ଼ିଲା, ଏଥିଠୁ ମୋର ଆଉ ବଡ଼ ଦୁଃଖ କଣ ଥାଇପାରେ, ଅନୁବୋଉ ?"

"ତମର ଯେଉଁ ପୋଡ଼ା ଗୁଣ, ତମକୁ ଆଉ ଖାଇବାକୁ କିଏ ବୁଲେଇବ ? ଯାହା ହେଲେ ତ ଆଉ ପାଞ୍ଚଟାକୁ ଡାକି ଆଣି ଭଲେଇ ହେଇ ଯାଉଚ । କାର କୋଠେ କେତେ ଅଛି ଯେ, ଶହ ଶହ ଲୋକଙ୍କୁ ନିତି ବାଢ଼ିବ—"

"ଶହ ଶହ ତ କେବେ ଆସୁନାହାନ୍ତି ଅନୁବୋଉ । କେବେ କୋଉ ଦିନ ଜଣେ କେହି ମୋର ସ୍ନେହୀ, ମୋର ବନ୍ଧୁ ଭୁଲି ନପାରି ବୁଲି ଆସିଲେ ସେମାନଙ୍କୁ ନଦେଇ ମୁଁ ଖାଇ ପାରୁନାହିଁ । ତୁମେ ଧର୍ମ କର୍ମର ଦୋହାଇ ଦେଇ ନିତି ସିନ୍ଦୁର ବୋଳା ପଥର ପୂଜା କରି ପୂଜାରୀ ହାତକୁ ଥାଳି ଥାଳି ଡାଲି ଚାଉଳ ଭୋଗ ବୋଲି ବଢ଼େଇ ଦେଉଛ—"

"ହଇଅଁ ଦେବତାଙ୍କୁ ଖାଲି ଖୁଣିତ ଏବେ ହାତ ଗୋଡ଼ ଧରି ବସିଲଣି । ଏଣିକରେ ଯିବ କି ଆଉରି କେତେ ଫଳ ପାଇବ—"

ଗୋପାଳ ମୁହଁରୁ ବାହାରି ପଡ଼ିଲା ବିକଟ ବ୍ୟଙ୍ଗ ହାସ୍ୟ, ସେ ହସି ହସି କହିଲେ, "ହଁ, ଅନୁବୋଉ

ଏତିକରେ ମୋର ଦୁଃଖ ଯନ୍ତ୍ରଣାର ଅବସାନ ହେବନାହିଁ, ମୁଁ ଆହୁରି କେତେ ନିର୍ଯ୍ୟାତନା ଭୋଗକରିବି—"

ଗୋପାଳଙ୍କ ବିକଟ ମୁଖାକୃତି ଦେଖି ଶାନ୍ତାଦେବୀଙ୍କ ଅନ୍ତରଟା ଆତଙ୍କରେ ଥରିଗଲା ମୁହୂର୍ତ୍ତକପାଇଁ । ସେ ଆତଙ୍କଟିକୁ ଚାପିରଖି କ୍ଷିପ୍ର ବିରକ୍ତିରେ କହିଲେ, ଏଇଟା ଇମିତି ଗୋଟେ କାହିଁକି ହୋଉଚମ ! ଛି ଛି, ମଣିଷଟାର ଭଲ ବୁଦ୍ଧି ହେଲାଣି । ମୁଁ ଆଉ ପାରିବି ନାହିଁଲୋ ମା । ବାର ଦରବ ଦୋଉ ଦୋଉଚ, ଦୋଉନ ଦୋଉନ ବୋଲି ବୋଇଲାଣି ! ଯାଉଚ ସେ ବସ୍ତୁଟା କସ କରୁଚ ଦେଖିବ । ଅରଜି ନ ପାରେ ମୁଣ୍ଡ, ଖାଇ ଲେଉଟୁଥାଏ ଭୁଣ୍ଡ ।

## ବାର

କୋକ କହିଲା, "ଆଣ୍ଡଲୋ ! ଦୁଷ୍ଟ କହୁଛି ବରଂପୁରରେ କରସିନ ବେପାର କଲେ ବହୁତ ଲାଭ ହବ । ଆମର ବରଂପୁରୁ ଘରଟା ମଧ୍ୟ ହୋଇ-ଗଲଣି ।" ନାତି ଆଉ ଭିତରେ ଆଳାପ ଆଲୋଚନା ଚାଲିଥିବା ବେଳେ, କୋକ କୋକ ବୋଲି ଡାକ ଡାକ ଭିତରକୁ ଆସିଲା ଦୁଷ୍ଟ ।

"କଣ ସବୁ କଥା ଚାଲିଛିରେ ?"

"ଏ କୋକ ଆଉଥରେ ବେପାର କରିବ ବୋଲୁଚଯେ—"

"ବେପାର ନ କଲେ ଚଳିବନି ଆଉ, ପୁରୁଷ ପୁଅ ବସି ଖାଇଲେ ଜଣ୍ଡବାଲି ସରିବ । ଆଉଗୋଟାଏ କଥା, ସବୁଦିନେ ସେ ମଧ୍ୟ ତମ ହାତକୁ କେତେ ଚାହିଁରହିବ ? ଆଜି ଏକା ହେଇଛି, କାଲି ସକାଳୁ କୁଟୁମ୍ବ ବଢ଼ିଯିବେ । ମୁଁ ମଧ୍ୟ କୋକକୁ ସେଇକଥା କହିଲି । ଏଥର ତମଠୁ ପଇସାଟେ ହେଲେ ନବନାହିଁ । ତମେ ତ ଦେଖୁଛ ମୋଟର ବେପାର କଲାଠୁ ବରଂପୁରରେ ରହିବା ଅଭ୍ୟାସ ହୋଇଗଲା ଯେ ଦିନେ ଗାଁରେ ରହୁନାହିଁ । ଘରୁନେଇ ବାହାରେ ଖରଚ କରିବା ବଡ଼ ଅସୁନ୍ଦର କଥା । ଏତେ ପାଠ ପଢ଼ିଲା, ବୁଦ୍ଧିମନ୍ତ ପିଲାଟା, ଅକର୍ମା ହୋଇ ଘରେ ବସିବ ?" ଶାନ୍ତାଦେବୀ ଦୁଷ୍ଟର ଗାମ୍ଭୀର୍ଯ୍ୟଭରା ଭାଷଣ ଶୁଣି କହିଲେ, "ହଁରେ ଦୁଷ୍ଟ, ତୋର ଭାତ ଯେତେ ଆଇଷ ସେତେ ହେଉ । ଛ'ନାତି ଧନଧାନ୍ୟ ଧରି ଘରକରେ । କୋକତ ତୋର ଜନମକଲା ଖାଇପଣି, କୋ ଜନମରେ ତୁ ମୋର ପୁଅ ହୋଇଥିବୁରେ ଦୁଷ୍ଟ ।"

ଯଥାସମୟରେ ବସାଘର ଚଳିବା ଭଳି ସାଜ ସରଞ୍ଜାମ ଧରି କୋକ ଓ ଦୁଷ୍ଟ ବାହାରି ପଡ଼ିଲେ ଭଲ ଦିନରେ । ଗଲାବେଳେ ଶାଳକ କହିଲା, ମତେ ନନେଲେ ସବୁ ଭଙ୍ଗେଇ ଦେବଟି ? ଦୁଷ୍ଟ ହୋ ହୋ କରି ହସିପକେଇ କହିଲା, ଏଇକ୍ଷଣି ତୋତେ ଡାକ ଆସୁଥିଲା, ଆଉଥରେ, ଗଲାବେଳେ ଡାକିଯିବ ବୋଲି ଆସିଚପରା ?

ବରଂପୁରରେ ବସାଘର ବନ୍ଦୋବସ୍ତ ହେଇଗଲା । ସୁପ୍ରସନ୍ନାର ଘର ଅତି ନିକଟ । ଆସିଲାବେଳେ ଅତି କଷ୍ଟରେ ପାଞ୍ଚଥର ଗଣିଗଣି ତିରିଶିଟଙ୍କା ଆଣି ଦେଇଥିଲେ କୋକ ହାତରେ । ଗୋଟାଏ ରାତିରେ ଶେଷ ହେଇଗଲା । ତିରିଶିଟଙ୍କା କେତେ ! ଦୁଷ୍ଟ କହିଲା ସେଥର ନୋଟ ଉପରେ ସାର ପାଖଠୁ ତିନି-ହଜାର ଟଙ୍କା ନିଆହେଇଛି, ସେ ଏବେ ଦେଖିଲାକ୍ଷଣି ମାଗୁଛି । କାଗଜ ଉପରେ କେହି ତ ଗୋଟିଏ ପଇସା ଦେବେନାହିଁ ।

"ତୁ କହିଲୁ କମିତିହେଲେ ଯୋଗାଡ଼ କରିବା ବୋଲି—"

"କମିତିହେଲେ ଯୋଗାଡ଼ ହୋଇଯିବ । ନା ! ସାନ୍ତାପଲ୍ଲିର ଭୂମିଟା ପଡ଼ିଶ ଭରଣ ଅଛି ସେଦିନ ଆସି ମୁଁ କଥାବାର୍ତ୍ତା କରିଛି । ସ୍ୱାଧୀନ ତଳଖା ଲେଖିଦେଲେ ଦି'ହଜାର ଦବ ।"

"ଲେଖିଦେବାକୁ କିଏ ମନା କରୁଛି, ଆଣେ କାଗଜ କଲମ, ଲେଖିଦେବି ।"

× × × ×

ଗୋପାଳ ବଶୁଙ୍କୁ କହିଲେ, "ବଶୁ, ଗରମ ଜଳଟିକିଏ ଆଣିଦେଇ ପାରିବୁ ?" ବଶୁ ଫେରିଆସି କହିଲା, "ଚୁଲିରେ ଏଣ୍ଡ୍ରିଘା ବସିଚି, କୋକ ଏଇକ୍ଷଣି ଖାଇବେ, ଓଳିଏ ହବନାଇଁ ।"

ଦ'ଘଡ଼ିରେ ଗୋପାଳଙ୍କ ପାଇଁ ବଶୁ ଭାତ ବାଢ଼ି-ଦେଲା । ଗୋପାଳ ଲେଖ ଟେବୁଲ ପାଖରୁ ଉଠିଆସି ବଢ଼ା ଭାତକୁ ଶୁଙ୍ଘି ଆମୋଦରେ ଅଳ୍ପ ହସି ବଶୁକୁ ପଚାରିଲେ, ମା ନାହାଁନ୍ତି ?

"ମା ସେଆଡେ ଖୁଉଳ ଚୁନା କରୁଛନ୍ତି, କୋକବାବୁଙ୍କ ପାଇଁ ଆଉଣ୍ଡା ପିଠା ପଠାହବଯେ ।"

ଖାଉ ଖାଉ ଗୋପାଳ ପଚାରିଲେ, ଏଇ ଜନଷ ରନ୍ଧାହେଉଛି ?

"ହଁ ମା କହିଲେ କୋକଙ୍କ ନାଇଁ, ତାଙ୍କ ଆଉ ବାଇଗଣ ଆମ୍ବିଳ କରେ ।"

ଗୋପାଳ ଅଳ୍ପ ହସିଦେଲେ । ଜ୍ୱରଣ ଶରୀର, କ୍ଷୁଧା ଲାଗୁଛି, ଅଥଚ ରୁଚି ଲାଗୁନାହିଁ । କାର୍ତ୍ତିକ ନାହିଁ, କାହାକୁ କଣ ମାଗିବେ ? ଭାବିଲେ ଏହା ଅପେକ୍ଷା ବଣିପୁର ସେବାଘର ଭଲ ହେବ । ଆଉ ଦଶଟା ରୋଗୀ ରହିଛନ୍ତି, ମୁଁ ବି ହେବି ସେମାନଙ୍କ ଭିତରେ ଜଣେ ଅନାଥ ବ୍ୟକ୍ତି । ନା-ନା ! ଲୋକେ କଣ କହିବେ, ମୋର ସ୍ତ୍ରୀ ନିନ୍ଦା ପାଇବେ । ନା, ନିନ୍ଦା କାହିଁକି ପାଇବେ ? ସେ ସମ୍ମତ ହେଲେ ତ ଯିବା ଉଚିତ । ହାତଧୋଇ ଯାଇ ବସିଲେ, ଖବରକାଗଜ ଆସିଲା କଣ କରିବେ । ହାତରେ ପଇସାଟିଏ ନାହିଁ । କାର୍ତ୍ତିକ ନାହିଁ, ପେନ୍‌ସନ୍ ଟଙ୍କାଟା ଆଣିଦେବ କିଏ ? ଚଷମା ବିନା ଲେଖାପଢ଼ା ହୋଇପାରୁ ନାହିଁ । ଦିନକୁ ଦିନ ଦୃଷ୍ଟି ଶକ୍ତିହ୍ରାସ ହୋଇ ଆସିଲାଣି । ସେ ଆଉ ଭାବି ପାରିଲେ ନାହିଁ । ଚୌକିରୁ ଉଠି ଦୁଆର ପାଖକୁ ଯାଇ ଡାକିଲେ, ଅନୁବୋଉ !

"କାହିଁକି ବା ଏତେ ଅନୁବୋଉ, ଅନୁବୋଉ ଲାଗିଚି ।"

ଗୋପାଳ ଆଉ ଟିକିଏ ଅପ୍ରସ୍ତୁତ ହୋଇ କହିଲେ, ସେଇ ଛୁଆବେଳର ଅଭ୍ୟାସ ଯେ, ଅନୁବୋଉ । ମୋର ସେ ଆଦରର ଡାକ ଅନୁବୋଉ ଶବ୍ଦଟିକୁ ଛାଡ଼ି ପାରୁନାହିଁ । ହଁ ସେ କଥା ଥାଉ, ମୁଁ ଭାବୁଥିଲି ଅନେକଗୁଡ଼ାଏ ରୋଗୀ ବଣିପୁରୁ ରୋଗୀ ଘରେ ଅଛନ୍ତି । କେତେଦିନ ପାଇଁ ମୁଁ ମଧ୍ୟ ସେଠି ରହନ୍ତି— ।

"ଟଙ୍କାରୁ, ପଇସାରୁ, ଭୂଇଁରୁ, ଘରୁ ସବୁ ଦେଇ ରୋଗୀଘର ନା ଚୁଲିଘର, କଚେରି, ପାଉନ ରଇବ ।

"ତୁମର ଅନୁମତି ନ ନେଇ ତ କେବେ କୌଣସି କାର୍ଯ୍ୟ କରିନାହିଁ । ସେଥିପାଇଁ ଆଜ ଯିବା ସମୟରେ ତୁମକୁ ପଚାରୁଛି । ହଁ, ଆଉ ଗୋଟାଏ କଥା, ଏଇପାଖରେ ବଶୁପୁରଟା । ତୁମର ରୋଷେଇରୁ ମୋ ସକାଳେ ପଠେଇ ଦବ । ସେଠି ଗୋଟାଏ ରୋଷେଇ ଆୟୋଜନ କଲେ ଯାହା କିଛି ବ୍ୟୟହେବ, ତୁମକୁ ଦେବାକୁ ତ ପଡ଼ିବ !"

"ଏଁ, ଭୂଇଁ ଘର ଦେଇ ନୋକ ରଖିଚ ପରା, ରାନ୍ଧିବେ ନାଇଁକି ?"

ସେମାନେ ସବୁ ରୋଗୀ ଲୋକ ଅଛନ୍ତି । ଜଣେ ଚାକର ଅଛନ୍ତି । ସେମାନେ ସବୁ ଗରିବ ଲୋକ, ମତେ ସେମାନେ ଦେଇ ପାରିବେ କିପରି ? ତୁମର ନୂତନ ପୂଜାରୀ ହାତରେ ଯାହା ହେଉ ପଠେଇଦେବ ।

ଖଣ୍ଡେ ମାଇ ଛୋଟ ଝିଅ, ଗୋଞ୍ଜୀ ଭଳିଆ ଖଣ୍ଡେ କୁରୁତା, ଆଉ ସେଇ କାର୍ଯ୍ୟରେ ଥିବା ସମୟରେ କିଣିଥିବା ଏଣ୍ଡି ଚାଦର ଖଣ୍ଡିକ ଧରି ଗୋପାଳ ଚାଲିଗଲେ ବାଡ଼ିପାଖ ବାଟେ । ଚାଲା ହରକତ ଭାବରେ ଭିତରକୁ ଆସୁ ଆସୁ ଦାଣ୍ଡ ପାଖଆଡ଼ୁ ବୃନ୍ଦାବନ ଦୁଆର ଠେଲି ଆସି ଦଣ୍ଡବତ କଲା ।

"କୁଆଡ଼େ ଆସିଲୁରେ ବୃନ୍ଦା ?"

ବୃନ୍ଦାବନ ମଥା ନୁଆଇଁ କହିଲା, "କାର୍ତ୍ତିକ ଏ ଆଡ଼ୁ ଯାଇ କହିଲା, ମାମୁଁଙ୍କର ଦେହ ଭଲ ନଥିଲା ଯେ ବୋଉ ମତେ ପଠେଇଲା, ଯା ମାମୁଁଙ୍କ ପାଖେ ରହିବୁ ବୋଲି—"

ବୋଉ ତତେ ପଠେଇଲା, ଯାରେ ପୁଅ ମାମୁଁଙ୍କ ସେବା କରିବୁ । ସେଗଣା ମଣିଷ, ତାଙ୍କର ରିକ୍ତ

ସମ୍ଭାଳିବା ଠିକଣା ନାହିଁ । ଭଣଜା ମୋର ଧାଇଁ ଆସିଛୁ । ମୋର ଏଇଠେ ଖାତ ଲୁଗା ନାହିଁରେ ପୁଅ ।

"କାର୍ତ୍ତିକ, ଏଇ ଚିଠିଟା ଦେଇଛୁ ।"

"ହଁ, ଚିଠି ଦେଇଛି, କାହିଁ ଆଣେ ।"

"କାର୍ତ୍ତିକ କହୁଛି, ମାମୁଁଙ୍କୁ ଦବ—"

"ଦେଖିଲ, ସେଇଥିପାଇଁ ତମେ ପୋଡ଼ାମୁହାଁ ଗୁଡ଼ାଙ୍କୁ ଘରେ ପୂରେଇବ ନାହିଁ । କାର୍ତ୍ତିକର କଥା ରଖିବ । ମାମୁଁଙ୍କୁ ବିଶ୍ୱାସ କରିବ । ମାଇଁ ବାଡ଼ିବ ଖାତ ।" ଚନ୍ଦ୍ରା ଚିଠି ଛଡ଼େଇ ନେଇ କହିଲେ, ଗଲୁ ତୁ ଆଗ, ଯୋ ବାଟ ଆସିଥିଲୁ ସେ ବାଟେ ।

"ସେଥର ମାମୁଁଙ୍କୁ ନ କହିଗଲୁ ବୋଲି ବୋଉ ଗାଳି ଦେଲା—"

ମାମୁଁ କଟକ ଯାଇଛନ୍ତି । ହାତରେ ଟଙ୍କା ଥିଲେ ଯା ଦେଖି ଆସିବୁ ।

ବୃନ୍ଦାବନ ହତବୁଦ୍ଧି ହୋଇ ଚନ୍ଦ୍ରାଙ୍କ ପ୍ରଦର୍ଶିତ ପଥରେ ଚାଲିଗଲା ।

ଗୋପାଳ ବସ୍ତୁପୁରୁ ଯାଇ ଆଡ୍ଡାରେ ଅଥୟ ହୋଇ ପଡ଼ିଲେ । କାର୍ତ୍ତିକ ଥିବାବେଳେ ପ୍ରଥମେ ସ୍ଥାନ ଟିକିଏ କରି ଗୋପାଳଙ୍କୁ ବସେଇ ଦେଇ ସବୁକଥା ବୁଝି ଆସି କହୁଥାଏ । କାର୍ତ୍ତିକ ସାଥିରେ ଥିଲାବେଳେ ପଥଶ୍ରମ ପରିବର୍ତ୍ତରେ ବାଟଚଲାଟା ଆନନ୍ଦ ଦେଉଥାଏ । ରୋଗୀ ଘରେ ଗୋଟାଏ କୋଣରେ ଶୋଇଛି ଗୋଟାଏ କୁଷ୍ଠରୋଗୀ । କଥାରେ କହନ୍ତି ଗ୍ଲେଟ ବସନ ଟାଣିଲେ କୌଣସି ଦାଗକୁ ଖଟେ ନାହିଁ । ରୋଗୀଘର ଆୟ ବାର୍ଷିକ ଦଶଭରଣ ଧାନ । ଚକିଆକ ନବ ସେଇଥିରୁ ଦରମା । ରୋଗୀଙ୍କ ଖାଦ୍ୟ ଔଷଧ ସବୁ ସେଇଥିରୁ । ରୋଗୀ କେତୋଟା ଥିଲେ, ଚାଲିଗଲେଣି ଯେ ଯୁଆଡ଼େ । ଚକିଆକ ଗାଁ ଭିତରକୁ ଚାଲିଯାଇଥିଲା । ଖବର ପାଇ ଆସି କହିଲା, ତାର ଯେତେ ସବୁ ଅଭାବ ଅସୁବିଧାର କଥା । ଗାଁର ମୁଖିଆ ଲୋକ କିଏ କମିଟି ଆସି ଖାଲି ଅଭାବ ପୂରଣ କରିବାକୁ କହିଦେଇ ଗଲେ । ଗୋପାଳ ମୂକମୌନ ହୋଇ ନୀରବରେ ସମସ୍ତଙ୍କ ମୁହଁକୁ ଚାହିଁ ରହିଲେ । ଦେଖୁ ଦେଖୁ ଗୋଟି ଗୋଟି ହୋଇ ସମସ୍ତେ ଚାଲିଗଲେ । ସନ୍ଧ୍ୟାର କ୍ଷୀଣ ଆଲୋକରେ ଗୋପାଳଙ୍କ ମନଶ୍ଚକ୍ଷୁରେ ଦିଶିଲା କାର୍ତ୍ତିକର ଛବି । ତାଙ୍କର ମନେ ପଡ଼ିଲା ଇମିତି ସନ୍ଧ୍ୟା ସମୟରେ କାର୍ତ୍ତିକ ଚନ୍ଦ୍ରାଙ୍କଠୁ କେତେ ଗାଳି କେତେ ଗଞ୍ଜଣା ଖାଇ ତାଙ୍କ ପାଖରେ ଟିକିଏ ବସିବା ମୋହ ଛାଡ଼ି ପାରି ନାହିଁ । ଆଜି ସେ ଯାଇଛି, ତାଙ୍କୁ ନିଃସହାୟ କରିଦେଇ । ଯାଇଛି ସତେ, କେତେ ସହ୍ୟ କରିଥିଲା । ସେଦିନ ଅତି ଅଭିମାନରେ ଏକାଥରକେ ଚାଲିଗଲା ।

ଚାଲିଯିବ ଚାଲିଯିବ ବୋଲି କେତେଥର ଯାଇ ନଥିଲା । କେତେଥର ରାତିରେ ନ ଖାଇ ଶୋଇ ସକାଳୁ ଉଠି ପୁଣି କାମରେ ଲାଗିଥିଲା । ସେ ଭାବିଲେ ଚନ୍ଦ୍ରା ତାର ଚରିତ୍ର ଉପରେ ଦୋଷ ଆରୋପ କରିଦେବାରୁ ସେ ସହ୍ୟ କରି ପାରିଲା ନାହିଁ । ମନୁଷ୍ୟର ଚରିତ୍ର କେଡ଼େ ସୁନ୍ଦର, କେଡ଼େ ପବିତ୍ର ! ନଜାଣି ନଶୁଣି ସେଇ ଏକାନ୍ତ ଆପଣାର ଜିନିଷ ଉପରେ କଳଙ୍କର କାଳିମା ବୋଳିଦେଲେ, ପ୍ରକୃତ ମନୁଷ୍ୟ ଯେ ସେ ସହ୍ୟ କରିପାରେ ନାହିଁ । କାର୍ତ୍ତିକ ତାର ଚରିତ୍ର ସମ୍ବନ୍ଧୀୟ ଦୋଷାରୋପ ସହ୍ୟ କରିପାରିଲା ନାହିଁ । "ଚନ୍ଦ୍ରାଦେବୀ ତୁମକୁ ମୁଁ ମୋର ମନ ଭିତରକୁ, ତୁମକୁ ମୋର ଅନ୍ତର ରାଜ୍ୟକୁ ଟାଣି ଆଣିବାକୁ, ତୁମକୁ ମୁଁ ମୋର ସର୍ବସ୍ୱ ଦେବାକୁ, ତୁମକୁ ମୁଁ ମୋର ହୃଦୟ ରାଜ୍ୟର ଅଧୀଶ୍ୱରୀ କରିବାକୁ କେତେ ଚେଷ୍ଟା କରିଛି ! କିନ୍ତୁ ଚନ୍ଦ୍ରା ! ଅନ୍ଧ ମୁଁ, ଜାଣିପାରି ନାହିଁ, ତୁମର ଆଉ ମୋର ମନର ଗତି ଥିଲା ଭିନ୍ନ ପ୍ରକାର । ତୁମେ ଚାହିଁଥିଲ ବାସ୍ତବ, ମୁଁ ଚାହିଁଥିଲି କଳ୍ପନା— ।"

ହାୟ । କଣ କରିଛି ମୁଁ ! ଅପାତ୍ରରେ ମୋର ସର୍ବସ୍ୱ ଅର୍ପଣ କରି ବର୍ତ୍ତମାନ ଅରଣ୍ୟରୋଦନ କରୁଛି । ନା-ନା, ଚନ୍ଦ୍ରା ! ତୁମକୁ ମୁଁ ଅପାତ୍ର ବୋଲି କେବେ ମଧ୍ୟ ଭାବିନାହିଁ । ତୁମକୁ ମୁଁ ମୋର ସହଧର୍ମିଣୀ, ସହକର୍ମିଣୀ କରି ଗଢ଼ିଦେବି ବୋଲି କେତେ ବଡ଼ ବଡ଼ କଳ୍ପନା କରିଥିଲି । ମୋର ବାଲ୍ୟର ସ୍ୱପ୍ନ,

ଯୌବନର କଳ୍ପନା—ପ୍ରଥମେ ମୁଁ ମୋର ସ୍ତ୍ରୀ କୁ ମୋର ଧର୍ମପତ୍ନୀକି ସ୍ୱାଧୀନତା ଦେବ । ତାହାହିଁ ହେବ ମୋ ସମାଜ ସଂସ୍କାର ପ୍ରୟାସର ପ୍ରଥମ ସୂଚନା । ତାପରେ ତୁମର ହାତରେ ନାରୀ ଜାତିର ଉନ୍ନତି କାମନାରେ ଦେଶରେ ଗଢ଼ିଦେବ ଶତ ସଂଖ୍ୟକ ଅନୁଷ୍ଠାନ । ତୁମର ମୁହଁରେ ଜୁହାଇ ନାରୀ ଜାତିର ଅଜ୍ଞାନ ଅନ୍ଧକାର ଦୂର କରିଦେବ । ଭାବୁଥିଲି, ତୁମର କଲ୍ୟାଣମୟ ହାତରେ ଦେଶର ଚିର ଅବରୁଦ୍ଧ ନାରୀ ରାଜ୍ୟର ଦୁଆର ଖୋଲି ଦେବ । କିନ୍ତୁ ହାୟ ! ମୋର କଳ୍ପନା ସୌଧ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଧୂଳିସାତ୍ ହୋଇ ଯାଇଛି । ଶାନ୍ତାଦେବୀଙ୍କୁ ମୁଁ ଆୟତ୍ତ କରି ପାରିନାହିଁ । ଶାନ୍ତାଙ୍କୁ ମୁଁ ମୋର ସ୍ନେହ ଶୃଙ୍ଖଳାରେ ବାନ୍ଧି ପାରିଲି ନାହିଁ । ଶାନ୍ତା ମୋଠୁ ଦୂର ସ୍ୱତନ୍ତ୍ରା ହୋଇ ପଡ଼ିଛନ୍ତି । ଭାବୁ ଭାବୁ ଗୋପାଳ ଏକାନ୍ତ ତନ୍ମୟ ହୋଇ ଲେଖି ବସିଗଲେ, "ବ୍ୟର୍ଥ ଜୀବନର କରୁଣ କାହାଣୀ ।" ସନ୍ଧ୍ୟାର ଅନ୍ଧକାରରେ, କ୍ଷୀଣ ଦୃଷ୍ଟି ଶକ୍ତିରେ ତାଙ୍କର ପେନ୍‌ସିଲ ଖଣ୍ଡିକ କାଗଜ ଉପରେ ଚାଲିଛି, ଅବିରାମ ଗତିରେ ।

କେତେବେଳେ ସେଠିରେ ଶିବପ୍ରିୟ କଳା କାଟି କାଟି ହ୍ୱାରିକେନ୍ ଲଣ୍ଠନ ଗୋଟିଏ ଆଣି ଥୋଇଦେଲେ । ଗୋପାଳଙ୍କର ମୌନ ଚିନ୍ତାଧାରା ଚାଲିଛି ଅବିମିଶ୍ର ଅଶ୍ରାନ୍ତ ଗତିରେ । ରାମ ଘୁଞ୍ଚିଦେଇ ଯାଇ ଶ୍ୟାମକୁ କହିଲା, ଲୋକଟା ପାଗଳ ହୋଇଗଲାକି ? ଶ୍ୟାମ କହିଲା ସିମିତି ଲାଗୁଛି ତ । ଗୋବିନ୍ଦ କହିଲା, ବାୟା ତ ହୋଇଗଲାଣି । ଦେଖୁନୁ, ବୁଢ଼ାଟାର ଆଖି ମୁହଁ କମିତି ଦିଶୁଛି ।

## ତେର

ସୁପ୍ରସନ୍ନା ବର୍ତ୍ତମାନ ତାର ସେଇ ସ୍ଲେଟ ଘରଟାକୁ ଛାଡ଼ିଦେଇ, ଚାଲି ଆସିଲାଣି ନୂତନ ଡାକବଙ୍ଗଳା ପାଖରେ ଗୋଟିଏ ସ୍ଲେଟ ଦୋତାଲା ଘରକୁ । ଘରଟାକୁ ଅଳ୍ପଦିନ ଆଗରେ ମିଷ୍ଟର ବାନାର୍ଜି ତିଆରି କରିଥିଲେ ଓଡ଼ିଶାରେ ରହିବେ ବୋଲି । ହଠାତ୍ ଜାମସେଦପୁର ଧନୀ ଶ୍ୱଶୁରଙ୍କ ଡାକରା ପାଇ ଘରଟା ବିକ୍ରି କରିଦେଇ ଚାଲିଗଲେ । ଟଙ୍କା ଛ'ହଜାର ସାତ'ଶ ଦେଇ ଶାନ୍ତ ନର୍ସ ସୁପ୍ରସନ୍ନା ନାଁରେ କିଣିଦେଲା ।

ସମସ୍ତ ଉପରବେଳା, ସନ୍ଧ୍ୟା ଆଗତ ପ୍ରାୟ । ସୁପ୍ରସନ୍ନାର ଉପର ଘରେ ଶୋଇଥିଲା କୋକ । ଧାଈ ଟ୍ରେରେ ଚା' ଜଳଖିଆ ଆଣି ଥୋଇ ଦେଇଗଲା । କୋକ ସକାଳର ନିଶା ଝୁଙ୍କ୍‌ରେ ଆଖି ତୁଳୁ ତୁଳୁ କରି ସୁପ୍ରସନ୍ନା ଆଡ଼କୁ ଅନେଇ କହିଲା, ବାଃ ! କି ସୁନ୍ଦର ଦିଶୁଚ ମ ତମେ ।"

"ସୁନ୍ଦର ଦିଶିଲେ କଣ ହେବ, ଦିନକୁ ସେଇ ଦଶଟଙ୍କାରୁ ତ ଅଉ ଅଧିକ ପଇସାଟିଏ ଦେବାକୁ ନାହିଁ । କୋକ ବିଛଣାରୁ ଉଠିପଡ଼ି ସୁପ୍ରସନ୍ନାକୁ ଛାତି ପାଖକୁ ଟାଣି ନେଇ କହିଲା, ପଇସା କିଏ ପଚ୍ଛରେ ସେ ପଇସାକୁ ! ତୁମେ ମତେ ଯେ ସୁଖରେ ରଖିଛ !"

"ତୁମର ସ୍ତ୍ରୀ ?"

"ଛି ଛି କାଳିଆ ମଡ଼ ମଡ଼ ଗୋଜ ଦାନ୍ତି, ଥୁ ଥୁ, ମୁହଁରେ ଥୁ ଦିଅ ।" ଖିଲ୍ ଖିଲ୍ କରି ହସିଉଠିଲା ସୁପ୍ରସନ୍ନା ।

ମୋର ଯାହା ସୁନା ଥିଲା, ବିକ୍ରି କରି ଘରଟା କିଣିଦେଲି । ମୋ ପାଇଁ ସୁନା ହାର ଗୋଟାଏ ଆଣି ଦେବଟି ?

"ନିଶ୍ଚୟ ଆଣିଦେବି" ବୋଲି କହୁ କହୁ ସୁପ୍ରସନ୍ନାର ମୁହଁଆଡ଼କୁ ଓଠ ବଢ଼ାଇଲା କୋକ । ସୁପ୍ରସନ୍ନା କୋକର ମୁହଁର ଗନ୍ଧରେ ଅସ୍ଥିର ହୋଇ କୋକକୁ ଚଉକିରେ ବସେଇ ଦେଇ କହିଲା, ଚା'ଖାଅ ହେ । ଦୁଙ୍ଗା ଆଣି ଦେଇଥିବା ରମ୍ ବୋତଲଟା ଟେବୁଲ ଉପରେ ଥୁଆ ହୋଇଥିଲା । କୋକ ଗ୍ଲାସରେ ଢାଳି ସୋଡ଼ା ମିଶେଇ ପିଇସାରି କହିଲା ଆଜି ସିନେମା ଦେଖି ଯିବା ? ତୁମେ ମୋ ପାଖରେ ବସିବଟି !

"ଆହାହାଃ ତୁମେତ ଯୋଉ ସମଝଦାର, ତୁମ ସାଙ୍ଗରେ ସିନେମା ନ ଗଲେ ଆଉ କାହା ସାଙ୍ଗରେ ଯିବ—?"

ତଳେ ସୁପ୍ରସନ୍ନାର ବସିବା ଘର । ତାର ବନ୍ଧୁ ବାନ୍ଧବୀ ଆସିଲେ ସେ ଘରେ ବସନ୍ତି । ଦାଇ ଆସି କହିଲା, ମିରା, ସିପ୍ରା ବୁଲି ଆସିଛନ୍ତି । ଏ ଦାଇ ! ବାବୁଙ୍କୁ ଚା’ ଦେ ବୋଲି କହିଦେଇ ତଳକୁ ଓହ୍ଲାଇ ଗଲା ସୁପ୍ରସନ୍ନା ।

ଦୁଇଟିଯାକ ବନ୍ଧୁର ତରୁଣୀ ଝିଅଟିଏ । ଗୋଲଗାଲିଆ ଦେହ । ମୁହଁ ମନ୍ଦ ନୁହେଁ, ପରିଧାନ ପ୍ରସାଧନ ପରିପାଟୀ ବେଶ୍ । ଦୁଆର ବନ୍ଦ କରିଦେଇ ବସିଲା କୋକ ପାଖରେ । ମିଠେଇ ଗୁଡ଼ିକ ଗୋଟି ଗୋଟି କରି ଖୁଆଇଦେଲା କୋକକୁ ।

ଚା’ ଖାଇବା ପୂର୍ବରୁ କୋକ ଆଉଜି ପଡ଼ିଲା ଦାଇର ମାଂସଳ ଛାତି ଉପରେ । ଦାଇ ଉଠି ଯାଇ ଦୁଆର ଛିଟିକିଣି ବନ୍ଦ କରିଦେଇ ଆସି କୋକର ଦେହକୁ ଆଉଜି ଗୋଟାଯାକ ଦେହରେ ହାତ ବୁଲେଇ ଦେଲା ”

ଗପ କରୁ କରୁ ଟେବୁଲ ତଳକୁ ଚାହିଁ ମିରା କହିଲା, ଆରେ ସୁନ୍ ତୋ ଘରେ କେତେ ଫଳ ଜମା ହୋଇଛି ।

“ହଁ, ମା,ର ଗୋଟାଏ ପେସେଣ୍ଟ ହସପିଟାଲରେ ଥିଲା । ସେଠି ଅସୁବିଧା ହେବାରୁ ଆମର ଏଠି ଅଛି । ଲୋକଟା ଖୁବ୍ ବଡ଼ଲୋକ । ଆପଣାର କେହି ତ ନାହିଁ, ତାର କିଏ ଗୋଟାଏ ବୁଢ଼ି ରକ୍ଷଣାବେକ୍ଷଣୀ ଅଛି । ସପ୍ତାହକୁ ଦୁଇଥର କରି ଏଗୁଡ଼ାକ ପଠେଇ ଦେଉଛି । ମୁଁ ଏଗୁଡ଼ାକୁ ଆଦୌ ଭଲ ପାଏ ନାହିଁ । ଯାହାହେଉ, ମୋର ସୁଲଦାଇ ବଡ଼ ଆନନ୍ଦରେ ଖାଉଛି ।”

‘ସତେନା, ମୁଁ ଏ ଜିନିଷଟାକୁ ଖୁବ୍ ଭଲପାଏ ।”

“ଯାଉଛି ନେଇଯା, ମିରା ।”

ସିପ୍ରା କହିଲା, ବେଶ୍ ସୁନ୍ଦର ଭେଡ଼ାଟିଏ ଘରେ ବାନ୍ଧି ରଖିଛୁ, ସୁନା । ସୁପ୍ରସନ୍ନା ହସି ହସି କହିଲା, ଟିକିଏ ସ୍ୱଚ୍ଛନ୍ଦରେ ବଞ୍ଚି ରହିବା ଉପାୟଟା କରିବାକୁ ହବରେ ସିପ୍ରା, ମୁଁ କହିବାକୁ ଲୁଣିଆ ନୁହେଁ । ଲୋକଟା ହେଉଛି ଭଲ । ମିରା ହସି ହସି କହିଲା, ଗଧଟା ଦାଇ ହାତର କୁଣ୍ଡା ପାଣିରେ ବି ସନ୍ତୁଷ୍ଟ ହୋଇ ରହୁଛି ନା କଣ ଲୋ ।

ସୁପ୍ରସନ୍ନା ବାହାରକୁ ଚାହିଁଲା । ଅନ୍ଧାର ହେଲାଣି, ଦାଇ ଆଜିଯାଏ ତଳକୁ ଆସିନାହିଁ । ସେ ହସି ହସି କହିଲା କେଜାଣି ଆଜି ଖୁଆଇ ଦେଇଥିବ ।

× × × ×

ନିଜ ହାତରେ ପ୍ରତିଷ୍ଠା କରିଥିବା ଶନିପୁର ସେବା ସଦନରେ ଭଙ୍ଗା ବେଞ୍ଚଟା ଉପରେ ବସି ଲେଖୁଛନ୍ତି ଗୋପାଳ । ମାର୍ଗଶୀର ମାସର ଅଧାଅଧି ସମୟ । ସେଇ ପାଖର ଧାନ ବିଲରେ କଟାଧାନ ଜଗି ଆସି କେଉଁଠି କପରି ଜଣେ ଦିଜଣ ବସି ପାଳ ଜାଳି ଶୀତ ଛଡ଼ାଉଛନ୍ତି । ବାରଣ୍ଡାର ବେଞ୍ଚଉପରୁ ଗୋପାଳ ମୁଣ୍ଡଟେକି ଚାହିଁଲେ । ଗୁଡ଼ାଏ ରାତି ହୋଇଗଲାଣି । ବାହାର ପାଖଟା ତାରାଲୋକରେ ଦିଶୁଛି ଅଳ୍ପ ଉଜ୍ଜ୍ୱଳ ।

ବିଶୁ ପାଚୁଡ଼ି ଘୋଡ଼େଇ ହୋଇ ଟିଫିନ୍‌କ୍ୟାରିଅରଟା ଧରି ଆସି ବାରଣ୍ଡାରେ ଥୋଇଦେଇ କହିଲା, ଏ ଶୀତରେ ମୁଁ ଆଉ କାଲିକି ଆସି ପାରିବି ନାହିଁ । ଗୋପାଳ ବିଶୁର କୌଣସି କଥା ନଶୁଣି ମୁହଁ ଧୋଇ ଲଣ୍ଠନଟା ଭିତରକୁ ନେଇ ନେଇ ବିଶୁକୁ ଡାକିଲେ । ବିଶୁ ସେଇ ଧୂଳିଆପାଦରେ ଦୁମୁ ଦୁମୁ କରି ଚାଲିଯାଇ ଧଡ଼ କରି ଟିଫିନ୍‌କ୍ୟାରିଅରଟା ଥୋଇଦେଇ, ଦୁମ୍ କରି ସାମନାରେ ବସିପଡ଼ିଲା ।

ଗୋପାଳ ସ୍ନିଗ୍ଧଭାବରେ ହସିଦେଇ, ବିଶୁର ମୁହଁକୁ ଚାହିଁ ପଚାରିଲେ, ସେଘେଇ କିଏ କଲାରେ ?

“ମୁଁ କଲି ।”

ଗୋପାଳ ଟିଫିନ୍‌କ୍ୟାରିଅର ଖୋଲି ଭାତଡ଼ଙ୍କଟା ପତରରେ ଥୋଇ ଥୋଇ କହିଲେ, କଣ ତରକାରୀ ଆଣିଛୁ, ବିଶୁ ?

“ଲୁଣ ଆଜି ହୋଇନଥିଲା, ବାଇଗଣ ପୋଡ଼ା ।”

"ଆଉ ?"

"ଡାଲି !"

ଗୋପାଳ ଡାଲିଗାଡ଼ରୁ ଗୁଣ୍ଡାଟିଏ ଉଠେଇ ପାଟିରେ ଦେଇ ଦେଇ ମୁଖ ବିକୃତ କରି କହିଲେ, ଡାଲି ପୋଡ଼ା, ଭାତ ପୋଡ଼ା, ବାଇଗଣ ପୋଡ଼ା, ସବୁ ପୋଡ଼ା କରିଛୁ—? ବଶୁ ଭୁତପରି ମୁହଁକରି କହିଲା, "ମତେ ତ ରନ୍ଧା ଆସୁନି ଆଜ୍ଞା ! ଭାତ ବସେଇ ଦେଇଥିଲି, ମା ବୋଇଲେ ଯା ପାଣି ଆଣିବୁ, ପୋଡ଼ିଗଲା ଆଜ୍ଞା—"

"ଡାଲି ପୋଡ଼ିଦେଲୁ ?"

"କାଠ ଦିଖଣ୍ଡ ଦେଇ ପକେଇଲି, ପୋଡ଼ିଗଲା ।"

"ବଗିଚାରୁ କମଳା ଆସିଥିବ, ଦି'ଟା ଆଣିଲୁ, ନାହିଁ ?"

"ସବୁଯାକ ତ ବରଂପୁର ଲୋକ ପାଖକୁ ପଠେଇ ଦେଲେ ଆଜ୍ଞା । ଗଜଆ ଆସିଥିଲା ଯେ ନେଲା ଆଜ୍ଞା ।"

"ଏ ଗୁଡ଼ାକ କଣ ଆଣିଛୁ । ମୁଁ ତ କିଛି ଖାଇପାରିଲି ନାହିଁ । ଦୁଧ ଟିକିଏ ହେଲେ ଆଣିଲୁ ନାହିଁ, ବଶୁ ?"

"ଦୁଧ ତ ତୋକର ନନା ବୋଲି କିଏ କୋଠେ ଜରରେ ପଡ଼ିଚି ଯେ ସଠା ହୋଇଗଲା ଆଜ୍ଞା ।"

ଗୋପାଳ ହାତ ଧୋଇସାରି କହିଲେ, ହେଉ ଆଚ୍ଛା ଯା ଶୋଇପଡ଼ିବୁ । ସକାଳୁ ଗଲାବେଳେ ମତେ କହିବୁ ।

## ଚଉଦ

ଚନ୍ଦ୍ରା ଆଉ ଅନୁ, ମା' ଝିଅ ଦୁହେଁ ବସି ଦୁଃଖ ସୁଖ କଥାବାର୍ତ୍ତା କରୁଥିଲେ । ଅନୁ କହିଲା, ତୋକଟା ଜନମ ହେବାଠୁ ଛଅ ବରଷ ହେଲା ତୋକର ନନଟା ଆଜି ଯାଏଁ ଉଠୁନାହାନ୍ତି । ଜର-ଜର-କ-ଜର ଶବ୍ଦ ହୋଇ ଆସିଲା ଯେ ଦ' ଥର ଗୁହାଳ ବେଳକୁ ସୁରି ଦିନ ଶୋଇଲେ ।

ସେ ଲୋକଟା ତ ବରଂପୁରରେ ବେପାର କଲାଯେ, ଘର ବୋଲି ଦିନେ ଆସିଲା ନାହିଁ । ମୁଁ ବୋଲୁଥିଲି ତୋକର ନନାଙ୍କୁ ଥରେ ପଠେଇଥାନ୍ତୁ । କେଜାଣି କାହିଁକି ମନରେ ପାପ ପଶୁଛି । ସେ ଦୁଷ୍ଟଟାକୁ ଧରି କ ନାଟ ଯାତ୍ରା ନଚେଇଛି, ଲୋକ ଆସି କହୁଚନ୍ତି; କାନରେ ପଥର ନଦା ହୋଇଗଲାଣି ।

ନମସ୍କାର ଆଈ ! ପଛରେ ଗାଳି ଦେଉଛକି ? ଦୁଷ୍ଟ ଡାକ ଆସିଲା ଭିତରକୁ । ଅନୁକୁ ଦେଖି ଭୂମିଷ୍ଠ ହୋଇ କହିଲା, ମାଉସୀଙ୍କୁ ଅନେକ ଦିନ ହେଲା ଦେଖି ନଥିଲି । ଦୁଷ୍ଟ ପକେଟରୁ ଟଙ୍କା ମୁଣିଟା, ବ୍ୟାଗରୁ ଶାଢ଼ୀ ଯୋଡ଼ାଟା ବାହାର କରି ଆଈଙ୍କ ପାଦପାଖରେ ରଖି କହିଲା, ଲୋକ କାର୍ଯ୍ୟବ୍ୟସ୍ତ ହୋଇ ଆସିପାରୁନି । ଛଅ ମାସରେ ଛ'ଶ ଲାଭହେଲା । ପାଞ୍ଚଶ ମୂଳଧନରେ ମିଶେଇଦେଲୁ । ଏଇ ଶହେଟା ଟଙ୍କା ତାର ପ୍ରଥମ ଅର୍ଜନ ବୋଲି ତୁମ ପାଖକୁ ପଠାଇ ଦେଇଛି । ମାସେହେଲା ମୁଁ ଭନେକର ଛୁଣି ବେପାର କରୁଛି । ସେଥିରୁ ଟଙ୍କା କେତେଟା ମିଳିଥିଲା ଯେ ତମ ପାଇଁ ମଠା ଶାଢ଼ୀ ଯୋଡ଼ାଟା ଆଣି ଦେଇଛି ।

ଚନ୍ଦ୍ରା ଦୁଷ୍ଟର ମଥାରେ ହାତ ବୁଲେଇ ଆଶୀର୍ବାଦ ବର୍ଷଣ କରି କହିଲେ, ହଁରେ ଦୁଷ୍ଟ, ଏଗାଁର ଭଗାଗ୍ର ଶହ୍ମୁଡ଼ିରେ ଚୂନ କାଳି ବୋଳି, ମୋ ପିଲା ତୋଉ ଦିନ ପାଞ୍ଚଟାରେ ଗୋଟେ ହୋଇ ଦାଣ୍ଡରେ ଠିଆହେବ !

ଦୁଷ୍ଟ ବୁଲିଗଲା ପରେ, ଶିଖିଆ ମା' ଆସି ଅଭ୍ୟାସ ବଳରେ ଚନ୍ଦ୍ରାଙ୍କ ପାଦପାଖରେ ବସିପଡ଼ି କହିଲା, ଶୁଣିଲଣି ଭାଉଜ ! କାଲି ନଅରେ କନାବୋଉ ଯାହା ବୋଲୁଥିଲା । ଇସ୍କୁଲର ଅବଧାନ ଶିଖିଆଘରେ ବସିଥିବାବେଳେ ଅନନ୍ତ ଦେଖିପକେଇ କଣ କହିଥିଲେ ବୋଲି ଶିଖିଆମାର ତାଙ୍କ ଉପରେ ଘାଗପଡ଼ିଛି । ସେଥିପାଇଁ ସେ ଅନନ୍ତଙ୍କ ସ୍ତ୍ରୀ ଛଦ୍ମେଧରେ ଯାହାଇଛା ତାହା କହିବାକୁ କୁଣ୍ଠିତ

ନୁହେଁ । ଶିଖିଆମା ଭୂମିକାଟାକୁ ଆଉ ଟିକିଏ ବଢ଼େଇ କହିଲା, ନଘଣ୍ଟାରେ ଗାଁଟାଯାକର ମାଇକିନା ଜମା ହୋଇଥିଲେ । ସେ କନାବୋଉ ଏବେ ଘୁଅ ଆଣିଦେଇଛି ଝିଲକାଟେ କାନରେ ଲମ୍ବେଇଛି । ଝିଲକା ଦୋହଲେଇ ବୋଇଲା, "ବୁଢ଼ା ମଣିଷଟାକୁ ଖାଇବାକୁ ନଦେଇ ପିଇବାକୁ ନଦେଇ ଯାହା କରୁଛନ୍ତି, ଲୋକ କହିଲାପରି ମତେ ନେ କାନଖଣ୍ଡିଆକୁ ଦେ ବୋଲି । କାହା ପଦାର୍ଥ କାହାକୁ ଯୋଗ ଥାଏ ଲୋ ମାଉସୀ । ନାତିକି ସର୍ବସ୍ୱ ଦେଇ ଇମିତି ବଢ଼ିଆ କରିଚି ଯେ—ବରହମପୁର ଗାଁରେ କୋଠେ ଗୋଟେ କେଣ୍ୟା ନା ଚୂଲି ରଖିଚି । ଆଉ ତ ପୁରୁଣା ଘଡ଼, ଉଦା ହାତରେ ହଗାଡ଼ି ମାରିବ ନାହିଁ । ଟଙ୍କା ପଇସା ନାତିକି କମିତି ହୋଉଚି କେଜାଣି । ହୋଣଘ ମା କଇଲା, ହଁ ଲୋ ଅନୁବୋଉ, ଗ୍ଳେର ମା ଯନ୍ଧ କାନ୍ଦେ, ଦୁଆର ଦେଇ କାନ୍ଦେ । ଆଉ ହୋଉନଥିଲେ ନାତି ଏସବୁ କରନ୍ତା କେଉଁଠୁ ? ହେଲେ ଶାସ୍ତ୍ର ପୁରାଣ ପଢ଼ି ବୋଲୁଚି ପରମ ଗୁରୁ । ସଦାଶିବ ପରି ସ୍ୱାମୀକି ଯାହା ଦୁଃଖ ହୋଉଛି, ତାକୁ ଖାଲି ନରକକୁ ଚଟି ହବ ଲୋ ବନୁବୋଉ ।"

"ବନୁର କନା କାନ୍ଦପକୋଉନ୍ତି ଲୋ ମାଉସୀ । କାଲି ବଣିପୁର ଯାଇଥିଲେ ସେ ଦେଖି ଆସିଲେ, ପୋଡ଼ା ଘରଟିଏ, ପୋଡ଼ା ଡାଲିଟିକିଏ ଧରି ଯାଇଥିଲା । ବୁଢ଼ାକାଳେ ଘରେ ବସି କେତେ ଭୋଗ ପାଉଥାନ୍ତେ । ଭୁକ ମାଗିଲାପରି ହାତଟେକା ଘରକୁ ଚାହିଁ ରହିଛନ୍ତି ଯେ ସେ ପିନ୍ଧା ସନ୍ଧ୍ୟା ଯାଉଛନ୍ତି । ଲୋକଙ୍କ ଦିହ ସହୁଚି କେମିତିକେ । ତା କନା ବେଲଡାଳିଆ ଯାଇଥିଲେ ଯେ ସେଇଠିର କିଏ କିଏ ସବୁ ବଡ଼ଲୋକ ପାଞ୍ଚଜଣ ବସୁଛନ୍ତି ତାଙ୍କ ଘରଟା ପାଇଁ କଚେରିକ ଯିବେ ବୋଲି ।" ଶିଖିଆ ମା ଯାହା ଯେତେ କହିଗଲା ସବୁ ଅବଧାନଙ୍କଠୁ ଶୁଣିବା କଥା ।

ଅନନ୍ତ ସ୍ନାନ କରି ଆସି ଭୋଜନ କରିବା ନିମନ୍ତେ ପିଣ୍ଡା ପାଖକୁ ଆସୁଛି, ଏଣେ ଅନନ୍ତର ସ୍ତ୍ରୀ ଘରେ ଥାଳି ଧରି ରୋଷେଇ ଘରୁ ବାହାରୁଚି, ଚନ୍ଦ୍ରା ଦୁଆର ଠେଲି ଘରେ ଢୁକି ଅନର୍ଗଳ ଗାଳିଦେଇ ଡାକିଲେ, ଆଲୋ ରାଣ୍ଡି, ଆଣ୍ଠୁକୁଡ଼ି, ତୋ ହାତର କାଚ ଭାଙ୍ଗି ହାତ ଧୋଇଦେବି ଆଲୋ । ଅନନ୍ତର ସ୍ତ୍ରୀ ସ୍ତବ୍ଧ ହୋଇ ରୋଷେଇ ଘରେ ପଶି ଭିତରୁ କିଳିଣି ଦେଇଦେଲେ । ଅନନ୍ତ କହିଲା, "କାଚଗୁଡ଼ାକ ଭାଙ୍ଗିଦେଲେ ଆଉଥରେ ନୂଆ କାଚ ଚୁଡ଼ି କିଣିବାକୁ ପଇସା ନାହିଁ ଭାଉଜ ।"

"ତୋର ବଣାଦିନ ତୋ ମାଇପ ଆଉଥରେ ନୂଆଁ କାଚ ପିନ୍ଧିବରେ ନଣ୍ଡଣୁଆ ।"

"ମୋର ଦଶା ହେଲେ ତ ତୁମର କିଛି ଲାଭ ହେବନାହିଁ । ଗରିବ ଲୋକ ମୁଁ, ଭାତ ମୁଠେ ମଧ୍ୟ ଦଶାଦିନ ମୋ ପିଲାଏ ତମକୁ ଦେଇ ପାରିବେ ନାହିଁ । ତମର ଦଶାଟା ଶୀଘ୍ର ହୋଇଗଲେ ଭାଇନାଙ୍କର ଲାଭ ହୁଅନ୍ତା । ଆଉ କେତେଟା ଦିନ ଟିକିଏ ସୁଖରେ ରହି ମଲାବେଳେ ଧନ୍ୟ ଧନ୍ୟ ଶୁଣନ୍ତେ ।"

× × × ×

ବିଶ୍ୱପୁର ପାଖରେ ଅନନ୍ତର ଧାନକଟା ହେଉଥିଲା, ସେଥିପାଇଁ ସେ ସକାଳ ସକାଳ ଗଣ୍ଡେ ଖାଇ ଯାଇଥିଲା ଧାନକଟା ଦେଖି ।

ଦୂରରୁ ଦେଖିଲା ଗୋପାଳ ସେବାସଦନର ନିର୍ଜନ ପିଣ୍ଡାରେ ଏକା ହୋଇ ବସିଛନ୍ତି । ସେ ଆଉ ବାଟକାଟି ଚାଲି ନଯାଇ ଆଗେଇ ଆସିଲା ଗୋପାଳଙ୍କ ପାଖକୁ । ଗୋପାଳ ନୀରବରେ ତାଙ୍କର ନିଷ୍ପ୍ରଭ ଆଖି ଦୁଇଟା ବିସ୍ତାରିତ କରି ଅନନ୍ତର ମୁହଁକୁ ଅନେଇ ରହିଲେ ।

ଅନନ୍ତ ଗୋପାଳଙ୍କ ଘରର, ଶରୀରର ଆଉ ପରିଧାନର ଦୁରବସ୍ଥା ଦେଖି ମନେ ମନେ କ୍ରୋଧ ହିଂସାରେ ଜଳିଉଠି କହିଲା, ପୈତୃକ ସମ୍ପତ୍ତି ଉପରେ ତୁମର କଣ କୌଣସି ଅଧିକାର ନାହିଁକି, ଭାଇନା ?

"ତୋ କଥାର ଅର୍ଥ କଣ ମୁଁ ତ କିଛି ବୁଝିପାରୁନାହିଁ ।"

"ତୁମର ରହିବା ଅବସ୍ଥା ଦେଖି କହୁଛି । ବନ୍ଧୁକୁ ନେଇ ଘରେ ରଖିବା ଦିନ କହିଥିଲି, ପୋଷାପୁଅ ଗୁଞ୍ଜାଗୁଅ । ନାତିକ ଦତ୍ତପୁତ୍ର କରି ତ ହାତରେ ସର୍ବସ୍ୱ ଦେଇ, ନିଜର ଜୀବନ, ନିଜର କାର୍ଯ୍ୟ ସବୁବ୍ୟର୍ଥ କରିଦେଲ । ସେଇକଥା ଭାବି ଭାବି ଦୁଃଖ ଲାଗିଲା ଯେ କହିପକେଇଲି, ଦୋଷ ଥିଲେ କ୍ଷମା କରିବ ।

"ତାହା ହେଲେ ତୁ କଣ କହୁଛୁ ?"

"ମୋର କହିବା ପାଇଁ କଥା କିଛି ନାହିଁ । ଆପଣ ନିଜେ ପଣ୍ଡିତ । ସବୁ କଥା ଭଲ ଭାବରେ ବୁଝିପାରୁଥିବେ । ଏଇତ ଦେଖୁଛନ୍ତି ରହିଛନ୍ତି ; ନିଜେ ନିଜ ହାତରେ କରିଥିଲେ ସେବାଘର । ଆଉ କେତେଟା ଦିନ ପରେ ମାଟିରେ ମିଶିଯିବ । ନିଜର ମନୁଷ୍ୟତା, ନିଜର ଗୌରବ ସମ୍ବନ୍ଧରେ ଆପଣ ଯେତେବେଳେ ଚିନ୍ତାକରୁନାହାନ୍ତି, ଅନ୍ୟମାନଙ୍କୁ ଉପଦେଶ ଦେବା ଅଧିକାର ଆପଣଙ୍କର ରହିବ କିପରି ?

"ତାହା ହେଲେ ମୁଁ ଯାଉଛି ମୋର ସ୍ତ୍ରୀକୁ ପଚାରିବି । ସେ ମୋର ନ୍ୟାଯ୍ୟଦାବୀ ପୈତୃକ ସମ୍ପତ୍ତିର ଗୋଟିଏ ଅଂଶ ଦେବେ କି ନାହିଁ ?" ଗୋପାଳ ଅନନ୍ତର ସମ୍ମତି କିମ୍ବା ଅସମ୍ମତିକୁ ଅପେକ୍ଷା ନକରି, ବାହାରି ପଡ଼ିଲେ । ମନରେ ଭାବନା ଆସିଛି ସ୍ତ୍ରୀଙ୍କୁ ପଚାରିବେ, ଜୋର କରି କହିବେ, ତାଙ୍କର ନ୍ୟାଯ୍ୟ ଅଂଶ ପାଇବେ । ଅର୍ଥ ନିମନ୍ତେ ସେ ଆଉ ବ୍ୟାକୁଳ ହେବାକୁ ପଡ଼ିବନାହିଁ । ତାଙ୍କ ଅଂଶରେ ହୁଏତ କୋଡ଼ିଏ ହଜାର, ନା ନା, ଆହୁରି ବେଶି, ତିରିଶି ହଜାର, ଚାଳିଶି ହଜାର । ସେବାସଦନଟାକୁ ପକ୍କାଘର କରେଇ ଦେବେ । ଭଲ ଭଲ ଚିକିତ୍ସକ ରଖେଇ ଦେବେ । କେତେ ସେବକ ସେବିକା ରହିବେ ଇତ୍ୟାଦି ଇତ୍ୟାଦି ।

ରୋଗୀମାନଙ୍କ ନିମନ୍ତେ ଭଲ ଖାଦ୍ୟ, ଭଲପାଣିର ବ୍ୟବସ୍ଥା ହୋଇଯିବ, ଅନାଥ ଅରକ୍ଷ ଗୋରୁ ଗାଈଙ୍କ ନିମନ୍ତେ ବଡ଼ ବଡ଼ ଘର ପ୍ରସ୍ତୁତ ହେବ । ଆଶ୍ରମ ପକ୍ଷରୁ ସେଠି ଭଲ ଗାଈ ରହିବେ । ଦୁର୍ବଳ ରୋଗୀ ଦୁଧ ଖାଇ ବଳ ଲାଭ କରିବେ । ଏଇ ସ୍ଥାନସ୍ଥାନ ଅନାଥ ଅରକ୍ଷମାନଙ୍କ ଭିତରୁ କେତେ କବି, କେତେ ସାହିତ୍ୟିକ, କେତେ ଗାୟକ, କେତେ ବାଦକ, କେତେ ଚିତ୍ରକର, କେତେ ଶିଳ୍ପୀ, କେତେ ବକ୍ତା, କେତେ ଶ୍ରୋତା, କେତେ ଜ୍ଞାନୀ, କେତେ ମାନୀ ବାହାରିବେ ଦେଶର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ରତ୍ନ ରୂପରେ । ରୋଗ ପୀଡ଼ିତ ଦେହ, ମଥା ଉପରେ ମଧ୍ୟାହ୍ନ ଖରା । ଗୋପାଳ ଚାଲିଛନ୍ତି ପଛକୁ ନଚାହିଁ । ଭାବନା ଉପରେ ଭାବନା ଆସୁଛି । କଣ କରିବେ ସେ, କଣ ବୋଲି ଚିନ୍ତାକୁ କହିବେ, କିପରି କହିବେ ? ହଁ ଠିକ୍ ଏଇପରି କହିବେ । ଚିନ୍ତା ତୁମେ ମୋର ଅଂଶଟା ମତେ ଦେଇ ଦେବାକୁ ହେବ । କେଉଁ ରୁଷ ଶୁଣିବ ? ତାକୁ ଯେ ମୁଁ ଚିରକାଳ କହି ଆସିଛି, ମୋର ଯାହା କିଛି ସବୁ ତୁମର, ମୋର ଧନ, ମୋର ମନ, ସବୁ ତୁମରି ପାଇଁ ଉତ୍ସର୍ଗ କରିଦେଇଛି ; କିନ୍ତୁ ମୁଁ କଣ କରିବି ? ସେ ଯେ ମତେ ପ୍ରତ୍ୟାଖ୍ୟାନ କରିଦେଲା । ସେ ଯେ ଅତି ନିଷ୍ଠୁରୀ ହୋଇ ମୋ ପ୍ରତି ଅତ୍ୟାଚାର କଲା । ଶୁଣୁ ରୁଷ, ନିଶ୍ଚୟ କହିବି, ନିଶ୍ଚୟ ମୋର ଅଂଶ ଦାବୀ କରିବି । ଅନ୍ୟଥା କଲେ ଜୋର କରିବି, ସେଥିରେ ସୁଦ୍ଧା ସେ ଯଦି ନଦିଏ, ନଶୁଣେ, ଅଦାଲତର ଆଶ୍ରୟନେବି । ଅଦାଲତର ଆଶ୍ରୟନେଇ ଚିନ୍ତାଦେବୀଙ୍କ ନାମରେ ଅଭିଯୋଗ ଆଣିବି । କୌଣସି ଜଜ୍, କୌଣସି ଓକିଲ, କୌଣସି ମାଜିଷ୍ଟ୍ରେଟ ମୋର ଦାବୀ ଅଯଥା ବୋଲି କହିପାରିବେ ନାହିଁ । ସେ ପୁଣି ଭାବିଲେ, ଏଁ ଏସବୁ କଣ ଭାବୁଛି ମୁଁ । ମୁଁ ଯେ ଆଦର୍ଶ ପଛରେ ଧାଇଁ ଚିରକାଳ ସହିଆସିଛି ଅବହେଳନ । ଚିରକାଳ ସହିଆସିଛି ଅତ୍ୟାଚାର । ପାଟି ଫିଟେଇ ଦିନେ କରିନାହିଁ କୌଣସି ପ୍ରକାର ପ୍ରତିବାଦ । ସେଇ ମୁଁ ଯିବି ଆଜି ଅଦାଲତକୁ ସ୍ତ୍ରୀ ନାଁରେ ଅଭିଯୋଗ ଆଣିବା ନିମନ୍ତେ ! ମନେ ପଡ଼ିଗଲା ଅନନ୍ତର କଥା, ଭାବନା ଆସିଲା, ନା ନା, ଦାବୀ କରିବାକୁ ହିଁ ହେବ । ଯଦି ମୁଁ ଦାବୀ ନ କରେ ମୁଁ ହେବି ଭୀରୁ । ମୁଁ ଦେବି ମୋର ବ୍ୟକ୍ତିତ୍ୱ ଉପରେ ଆଘାତ ।

ସାରବାରିକ ଦୁରନ୍ତ ହାଁ ହାଁ କରୁ କରୁ ଡାଲହୁଣ୍ଡା ଉପରୁ ଗୋପାଳଙ୍କ ବାଁ ଗୋଡ଼ଟା ଖସିଗଲା । ସେ ପ୍ରାଣ

ସ୍ନାନକରି ଫେରୁଥିଲା ଧନୁ ବଢ଼େଇ । ଶୀର ବାଟିକି ଯାଉଥିଲା ପୋଖରୀ ପାଣି —ଲୋଟାଟା ସେଇଠି ପକେଇ ଦେଇ ଆସିଲା ଦଉଡ଼ି । ସେଇ ପାଖରେ ଥିଲା, ମଣିତ ବାଡ଼ରେ କାମ କରୁଥିଲା ରଘୁ ନାହାକ । ସମସ୍ତେ ଧରାଧରି କରି ନେଇଗଲେ ଗୋପାଳଙ୍କୁ । ଚନ୍ଦ୍ରାଦେବୀ ଲକ୍ଷ୍ମୀପୂପାଳ ଗୁରୁବାର ପୂଜା କରିବେ ବୋଲି ଘରଦୁଆର ଲିପାପୋଛା କରି ଝୋଟି ଦେଉଥିଲେ । ଦୁଆର ଠେଲି ଏତେଗୁଡ଼ାଏ ଲୋକ ଘରେ ପଶି କଣ ସବୁ କରୁଛନ୍ତି, କିଏ ସେ ରେ ! ଏ ଘରକୁ କିଏ ଆସିଲା ବୋଲି ପଚାରି ପଚାରି ଅଗଣାଆଡ଼ୁ ଆସି ଅଦ୍ଭୁତ ଘଟଣା ଦେଖି ଏକ ପ୍ରକାର ଚିତ୍କାର କରି କହିଲେ, ଦେଖିଲ ! ଧାଇଁ ଯାଉଥିଲେ ଆଶ୍ରମ କରି, ଘରେ ମୁଠେ ଖାଇକରି ପଡ଼ିଥାନ୍ତେ, ଧାଉଁଚନ୍ତି ଗୀତ ଶିଖିବ, ନାଟ ଦେଖିବ, ଯାକୁ ଦେବ, ତାକୁ ଦେବ । ଏବେ କୋଉଠୁ କି ରୋଗ ଧରି ଆସିଲେ ଯେ ଔଷଧ କରିବାକୁ, ବଇଦ, ଡାକ୍ତରଙ୍କୁ ଟଙ୍କା ଦେବାକୁ, ମୋର ବଳ ନାହିଁ ଲୋ ମା ! ଗୋପାଳ ବସିବାକୁ-ଚେଷ୍ଟାକରି ଶୀର ପ୍ରଭୃତିଙ୍କୁ ଯିବାକୁ କହି ଚନ୍ଦ୍ରାଙ୍କୁ ଚାହିଁଲେ, କଣ କହିବେ ବୋଲି ଭାବିଲେ; କିନ୍ତୁ କିଛି ଭାବିପାରିଲେ-ନାହିଁ । ମୁଣ୍ଡଟା କଣ ଲାଗୁଛି । ଦୁର୍ବଳ ମସ୍ତିଷ୍କରେ ଆଘାତ ଲାଗି ବିକୃତ ହେବାକୁ ଆରମ୍ଭ କରିଛି । ଗୋପାଳ କମିତ ଗୋଟାଏ ପୀଡ଼ା ଅନୁଭବ କରି ଦୁଇ ହାତରେ ମଥାଟାକୁ ଚିପିଧରି କହିଲେ, ଉଃ ! ବଡ଼କଷ୍ଟ । ଚନ୍ଦ୍ରାଦେବୀ ଝୋଟି ଦିଆ ପିଠୋଉ ଗିନାଟା ଧରି ଫେରିଯିବାକୁ ଉଦ୍ୟମକରି କହିଲେ, ଏ କେଡ଼େ ସୁନ୍ଦରିତ ଭଲ ହେଇଯାଇଥିଲା । ଆଉଥରେ କୋଉଠୁ ଏ ପୋଡ଼ା ରୋଗ ଧରି ଆସିଲା ବା ? ସେବା କରିବାକୁ ମୋର ଆଉ ବଳ ନାହିଁ ଲୋ ଝିଅ !

ଗୋପାଳ ଚନ୍ଦ୍ରାଙ୍କ ମୁହଁକୁ ଅର୍ଥଶୂନ୍ୟ ଦୃଷ୍ଟିରେ ଚାହିଁ କହିଲେ, "ତୁମଠାରୁ ସେବା ପାଇବା ଆଶାରେ ଆସିନାହିଁ, ଚନ୍ଦ୍ରାଦେବୀ ! ଆସିଛି ମୋର ଭାଗଟା ଅସୁଲକରି ନେବାକୁ । ଟଙ୍କା ଅପେକ୍ଷା ତୁମର ମନଟାକୁ ଯେ ମୁଁ ଅଧିକ ମୂଲ୍ୟ ଦେଇଥିଲି, ଚନ୍ଦ୍ରା ! କିନ୍ତୁ ମୋର ସେ ଭ୍ରମ ଆଜି ଦୂର ହୋଇଯାଇଛି । ସେ ଭ୍ରମ ଦୂର କରି ଦେଇଛି ଅନନ୍ତ । ଅନନ୍ତର ଅମୂଲ୍ୟ ଉପଦେଶ ଅଗ୍ରାହ୍ୟ କରିବା ଉପାୟ ତ ମୋର ନାହିଁ । କଣ ଭାବୁଛ, ମତେ ଗୋଟିଏ ଭାଗ ଦେବାକୁ ଇଚ୍ଛା କରିବ ଯଦି—"

ବ୍ୟଙ୍ଗ ହସି ଚନ୍ଦ୍ରା କହିଲେ, "ଭାଗୁଟେ ଦେବିନାହିଁ ଯେ— ବଣରୁ ବାଘୁଟେ ଆଣିଦେବି । ଅନନ୍ତଆ ଜଳଜଳା ଉପଦେଶ ଦେବାକୁ ଯାଇଥିଲା । ଆଜି ଦେବି ଯେ ଖାଇବ । ଆଜି ଏକା ମାଇପ ରଣ୍ଡୀକି ରାଣ୍ଡ କରିଦେବ । ରାନ୍ଧି ବାଢ଼ି ଦି'ଓଳି ପଠେଇବାରୁ ଖାଇ ପିଇକରି ବଳ ଲାଗିଲା ଯେ ଆସିଚ ଭାଗ ନେବାକୁ—"

"ହଁ ହଁ ଚନ୍ଦ୍ରା ତୁମର ଅମୃତମୟ ପ୍ରସାଦ ଖାଇ ମୋର ଶକ୍ତି ବଢ଼ିଗଲା । ସେଥିପାଇଁ ଆସିଛି ତୁମ ଉପରେ ଅତ୍ୟାଚାର କରିବାକୁ ।"

ଗୋପାଳଙ୍କ ମନଟା ପୁଣି ଫେରିଆସିଲା ସ୍ୱାଭାବିକ ଅବସ୍ଥାକୁ । ସେ ଉଠିବା ଚେଷ୍ଟାକରି କହିଲେ, ଚନ୍ଦ୍ରାଦେବି, ଦେଖିତ କେତେ ଗୁଡ଼ାଏ ଦୁଶ୍ଚିନ୍ତା କରିଗଲି । ତୁମକୁ ଯେ ମୁଁ ଅତିଶୟ ଭଲପାଏ, ସେ ଭାବ ମୁଁ ଏତେ ଶୀଘ୍ର ଆଉ ଏତେ ସହଜରେ କିପରି ଭୁଲିପାରିବି, ଚନ୍ଦ୍ରା ? ତୁମଠୁ ଅନେକ ଗଞ୍ଜଣା ସହିଛି, ଟଙ୍କା ପଇସା ବ୍ୟୟ କରିଦେବା ନିମନ୍ତେ । ଅବଶ୍ୟ ତୁମର ଅନିଚ୍ଛାସତ୍ତ୍ୱେ କେତେକ କାର୍ଯ୍ୟ କରିବାକୁ ଅଗ୍ରସର ହୋଇଛି ; କିନ୍ତୁ କୌଣସି କାର୍ଯ୍ୟରେ ସଫଳତା ପାଇନାହିଁ, ତୁମର ଅସହଯୋଗ ଅଶ୍ରଦ୍ଧା ଅକଲ୍ୟାଣର ଫଳରେ ।

"ଆରେ ବଗୁଆ ଆଣେ ଭାତଗଣ୍ଡେ ବାଢ଼ିଦେ, ଖାଆନ୍ତୁ । ମୁଣ୍ଡରେ ପିତ୍ତ ଚଢ଼ିଲାଣି । ଚୁଲି କାକତ ଗମ୍ପି ଗମ୍ପି ପିତ୍ତ ଚଢ଼ିଗଲାଣି ରେ ବଗୁ ! ଆଣେ, ଭାତ ଆଣେ ।"

## ପନ୍ଦର

କୋକ ଦୁଖିର ହାତ ଧରିପକେଇ କହିଲା, "କଣ କରିବି ଦୁଖି । ଜବାବ କରିଦେଇଚ, ତୁ ଯେ କୌଣସି ପ୍ରକାରେ ଯୋଗାଡ଼ କରିଦେବାକୁ ହେବ ।" ଦୁଖି କହିଲା, "ଆଉ ତ କେଉଁ ଟଙ୍କାଦେବାକୁ ରାଜି

ହେଉନାହାନ୍ତି । କିଏ କଣ କହୁଛି । ଏକାଥରକେ ହଜାରେ ଦି' ହଜାର ହେଲେ ସିନା ସୁନା ଟେଇବ୍ ହବ ।" ତତେ ତ ମୁଁ ସେଇ ଦିନଠୁ କହୁଛି ମୋ କଥା ଶୁଣୁନୁ । କହୁଛୁ ଆଣିପାରିବ ନାହିଁ । ନିଜର ସ୍ତ୍ରୀ ପାଖରୁ ଯଦି ଆଣି ନ ପାରିବୁ, ଆଉ ଆଣିବୁ କାହା ପାଖରୁ । ହେଁ, ମୁଁ ଯଦି ବଣ୍ଟ ହୋଇଥାନ୍ତି, ଯାହା ଇଚ୍ଛା ତାହା ଆଣୁଥାନ୍ତି— ।

"କିମିତି ଆଣିବୁ ମ ! ମାଗିଲେ ଏଡ଼େ ପାଟି ଏଡ଼େ ଭୁଣ୍ଡ କରୁଛ । ଆଈ ଶୁଣିଲେ ବାଡ଼େଇବ ।"

"ଆଚ୍ଛା ତେବେ ରହିଥା, ଆଉ ଆଠୁଟା ଦିନରେ ସବୁ ସୁବିଧାରେ ହୋଇଯିବ ।"

"ଆଠଦିନ ଆଠଦିନ କରୁଛୁ । ସୁପ୍ରସନ୍ନା କାଲଠୁ ଯୋଉ ଅଭିମାନ କରିଛନ୍ତି । ଆଉ ସେ ଦାଇଟା, କାବୁ କରୁ ହେଲ ନାହିଁ, ସୁନା ଇୟାରିଂ ଦି'ଟା ଦେବାକୁ ହେବ ବୋଲି ଲଗେଇଛି । ତୁ' କି ଉପାୟ କରିବୁ ଶୀଘ୍ର କରେ ।"

ଅନନ୍ତର ସ୍ତ୍ରୀ ଯାହା ସବୁ ନିଧରେ କହିଲା ବୋଲି ଶିଖିଆ ମା'ଠୁ ଶୁଣି ଚନ୍ଦ୍ରାଦେବୀ ଅନନ୍ତ ସହିତ ଧିଷଣ ଝଗଡ଼ା କରିଥିଲେ, ଚନ୍ଦ୍ରା ସେଇ ବିଷୟଟିକୁ ନେଇ ମନେ ମନେ ନାନା ପ୍ରକାର ବିଶ୍ଳେଷଣ କରୁ କରୁ ସମୟେ ସମୟେ ସେ ସନ୍ଦେହରେ ଅନ୍ଧକାରମୟ ଆବର୍ତ୍ତରେ ପଡ଼ି ଆତଙ୍କରେ ଚିତ୍କାର କରୁଥିଲେ । ଦୁଖି ହଠାତ୍ ଆସି ଶ୍ରାନ୍ତ କ୍ଳାନ୍ତ ଭାବରେ ଦୁମ୍‌କିର ପାଖରେ ବସିପଡ଼ି କହିଲା, କି ବେଭାର ଆରମ୍ଭ କଲୁ, ଖାଲି ଧାଇଁ ଧାଇଁ ପ୍ରାଣ ଗଲାହେ ଆଈ ।

"ସେ ଲୋକ ଆଉ ଘରକୁ ଆସିବ ନାଇଁକିରେ ? ଅନେଇଁ ଅନେଇଁ ଭିନପାଳି ଗୁରୁବାର ଗଲାଣି—"

"ସେ ଆଜ ଆସୁଥିଲା ଯେ ଦୋକାନଟାର ଟଙ୍କା ଗୁଡ଼ାକ ପାଖରେ ଅଛି, କାଲିକି ବ୍ୟାଙ୍କରେ ରଖିଦେଇ ଆସିବ । କାଲି ସନ୍ଧ୍ୟାବେଳକୁ ନ ହେଲେ ପଅରଦିନ ସକାଳେ ଆସିବ । ହଁ, ମନେପଡ଼ିଲା, ଆସିଲାବେଳେ ମତେ ବାରମ୍ବାର କହିଛି, ଗୁରୁଆତେ ଉପ୍ଯୁକର ସ୍ନେହ ଭଯ୍ ହେଇଛି । ତଳେ ସ୍ନେହ କୁଆଡ଼ୁ ଆସିଛନ୍ତି, ମଣିଷକୁ ଦେଖି ସ୍ବର୍ଣ୍ଣ ଗତି ପାହାନ୍ତି ବେଳେ ଝୀମମାର ସୁନାରୁପା ନେଇଯାଉଛନ୍ତି । ଲୋକ ବାରମ୍ବାର କହୁଛି, "ଆଈଙ୍କି କହିଦେବୁ ବୋଡୁ-ପିଲାର, ଆଉ ତାର ଯାହା ଯେତେ ସୁନା ଅଛି, ଗୋଟିଏ ହେଲେ ନ ପିନ୍ଧି ସବୁ ବଡ଼ ସିନ୍ଦୁକରେ ରଖିଦେବ ।"

"ହଇରେ ଦୁଖି, ବେଭାରରେ ଲାଭ ହେଉଛିପରା ? ଘରକୁ କାହିଁକି ଧରି ଯନେଇ ଆସୁନି, ବ୍ୟାଙ୍କରେ କାହିଁକି ରଖିବରେ ?"

ଦୁଖି କହିଲା, ତମେ ଆଜିର ବେଭାର ସୂକ୍ଷ୍ମ ଜାଣିନ ଆଈ ! ତମକୁ ଥରେ ହେଲେ ବ୍ରହ୍ମପୁର ନେବାକୁ ହେବ । ଆଜ ପାଞ୍ଚ ହଜାର ବ୍ୟାଙ୍କରୁ ଆଣିଲେ ଜିନିଷ କିଣା ହେଉଛି । ଦି ଦିନ ପରେ ଦଶ ହଜାର ରଖା ହେଉଯାଉଛି । ଇମିତି ସବୁ ଦିଆ ନିଆ ବେଭାର ଚାଲିଛି ନା । ମୁଁ ଯାଉଛି ଆଈ, ତାକୁ କହିଦେବି କାଲିକି ଗୁରୁବାର ହବ, ଆଈ ଦୁଃଖ କରୁଛନ୍ତି ବୋଲି ପଠେଇଦେବି । ଜାଣିଲନା ଆଈ, ଲୋକଟା ବଡ଼ ମନୁଆଁ ପିଲାଟା ନା ! ଯୋଉଥିରେ ଲଗେଇ ଦେଉଥିବ ସେଥିରେ ଜିଦ୍ କରି ଲାଗି ଯାଉଛି । ମୋଟର ବେଭାରରେ ସମସ୍ତେ ହାଇରାଣ କରିଦେଲେ ବୋଲି ସିନା କିଛି ହେଲାନାହିଁ । ନହେଲେ ତମର ଏ ଘର ସୁନାରେ ଗୁଡ଼ିଣି ହେଇ ଯାଆନ୍ତାଣି । ତମେ ଏବେ ଦେଖିବ ନାଇଁକି, ଆଈ, ଦି' ବର୍ଷ ଯାକର ଲେଖାତ ଏବେ ହେଇଯିବ । କିମିତି ହେଲେ ଟଙ୍କା ଦଶ ହଜାର ଲାଭ ଆସିବ ନାହିଁକି ? ଚନ୍ଦ୍ରା ଦଶ ହଜାର ନାଁ ଶୁଣି ଦୁଖିର ପିଠି ଥାପୁଡ଼େଇ ବିଦାୟ ଦେଇଦେଲେ ।

ଗୋପାଳ ସାସ୍ତ ରାତି ଭାବନାରେ ଭାବନାରେ କଟେଇ ସକାଳୁ ଉଠି ବିଛଣା ତଳୁ ଜଣେ ଅପରିଚିତ ସମାଲୋଚକର ଚିଠିଟି ବାହାର କରି ପଢ଼ିବାକୁ ଚେଷ୍ଟା କରି ମଡ଼ି ନପାରି ବସି ବସି କାନ୍ଥ ଧରି ଧରି ଝରକା ପାଖକୁ ଯିବାକୁ ଚେଷ୍ଟା କରୁ କରୁ, ଚନ୍ଦ୍ରାଦେବୀ ପାଖକୁ ଆସି କହିଲେ, କଉଠପରା ମତେ ଭଲପାଉଚ ନା ଚୁଲିପାଉଚ ବୋଲି, ଏ ମାସର ପେନ୍‌ସନ୍ ଟଙ୍କାଟା ଲୁକାଠେ ରଖିଚ ହେଲ ।

"ଏ ମାସର ପେନ୍‌ସେନ୍‌ଟା ଆଉ ଆସିବ ନାହିଁ । ମୋ ପାଖକୁ ପତ୍ର ଆସିଛି, ବ୍ରିଟିଶ ସରକାରଙ୍କ କାର୍ଯ୍ୟର ବିରୋଧରେ ଗତ ସଂଖ୍ୟା ଦର୍ପଣରେ ମୁଁ ଗୋଟାଏ ପ୍ରବନ୍ଧ ଲେଖିଥିଲି । ସେଥିପାଇଁ ମୋ ଉପରେ ଅବିଶ୍ୱାସ କରି ସରକାର ମୋର ପେନ୍‌ସନ୍ ବନ୍ଦ କରିଦେଇଛନ୍ତି ।"

"ଏଁ କଣ କରିଲ, କି ଚୁଲି ଲେଖା ଲେଖିଲ ଯେ ମାସକୁ ତିନିକୋଡ଼ି ଦଶଟଙ୍କା ଆଉ ଦେବେନାହିଁ । କାହିଁ ଆଣିଲ ସେ କଅାଁ ଧୂଆଁ କାଗଜପତ୍ର, ସବୁ ଚୁଲିରେ ପକେଇଦେବି ।"

ଗୋପାଳ ଚିନ୍ମୟୀଙ୍କ ଏତେଗୁଡ଼ାଏ କଥାର କୌଣସି ପ୍ରତ୍ୟୁତ୍ତର ନ ଦେଇ ଅତ୍ୟନ୍ତ ଅନ୍ୟମନସ୍କ ଭାବରେ କହିଲେ, ଅନୁବୋଉ ! କାଲି ଦର୍ପଣର ସମ୍ପାଦକ ଲେଖିଛନ୍ତି, ଆଉ ମଧ୍ୟ ଜଣେ ବିଚକ୍ଷଣ ସାହିତ୍ୟିକ ମୋର ଲେଖାର ଏତେ ପ୍ରଶଂସା କରି ଲେଖିଛନ୍ତି ଯେ ମୁଁ ଆଉ ସ୍ଥିର ହୋଇ ରହିପାରୁ ନାହିଁ । ଏଣେ ସମ୍ପାଦକ ମୋର ଲେଖା ମାଗିଛନ୍ତି । ତୁମେ ଅନୁଗ୍ରହ କରି ଯଦି ଚଷମା ଗୋଟିଏ ଆଣିଦିଅନ୍ତ—?

"ଏଁ ଶୁଣିବା ଯୁଆଙ୍କ କଥା ! କି ଚୁଲି ଲେଖା ଲେଖିଲେ ଯେ ଟଙ୍କା ଗଲା, ପଇସା ଗଲା, ସବୁ ଗଲା । ଆଉରି ସେଇ ଦୁଆ ଲାଗିଛି କସନା—ଚସମା, ଚସମା, ଚସମା ! ! !"

ଗୋପାଳ ଗମ୍ଭୀର କରୁଣ ଦୃଷ୍ଟିରେ ଚିନ୍ମୟୀଙ୍କ ମୁହଁକୁ ଚାହିଁ କହିଲେ, "ମୁଁ ଏବେ ଭାବୁଛି ଚିନ୍ମୟୀ, ତୁମେ ମତେ କେବେ ମୃତ୍ୟୁ ଶଯ୍ୟାରେ ନିକ ପାଇଁ ସୁଦ୍ଧା ଭଲ ପାଇନାହିଁ । ଯଦି ଭଲ ପାଇଥାନ୍ତ, ସାମାନ୍ୟ ଗୋଟିଏ ଚଷମାର ମୂଲ୍ୟ ଦେବା ନିମନ୍ତେ ଏତେଦୂର କୁଣ୍ଠିତ ହୁଅନ୍ତନାହିଁ । ମୋର କଳ୍ପନା ଜଳ୍ପନା ସବୁ ବୃଥା । ମୋର ଆନନ୍ଦରେ ତୁମର ସୁଖ ନାହିଁ । ମୋର ଶାନ୍ତିରେ ତୁମର ତୃପ୍ତି ନାହିଁ । ମୁଁ ନିଷ୍ଠୁର କରି ଜାଣିଲଣି ଚିନ୍ମୟୀ, ତୁମେ ମୋର ପ୍ରେୟସୀ ଭାବରେ କେବେ ପ୍ରେମ ଦେଇ ପାରିବନାହିଁ । କଣିବ ରାକ୍ଷସୀଭାବରେ ମୋ ଉପରେ ଅମାନୁଷିକ ଅତ୍ୟାଚାର—"

"ମଣିଷଟାର ମତି ଛନ୍ନ ହେଲାଣି ଲୋ ମା ! ମରିବାକୁ କାଳ ଆସିଲାଣି ଯେ ସେଥିପାଇଁ ରାକ୍ଷସୁଣୀ ପିଶାଚୁଣୀ ବୋଇଲାଣି ।"

ଗୋପାଳ ମୁହଁରୁ ଫୁଟିଉଠିଲା ଉନ୍ମାଦର ଉତ୍କଟ ହାସ୍ୟ । ସେ ଉତ୍କଟ ହସି ବିକଟ ଦୃଷ୍ଟିରେ ଚାହିଁ କହିଲେ, "ହଁ ଚିନ୍ମୟୀ, ମୋର ମରିବା ସମୟ ଆସିଲାଣି । ମୋର ମରଣ ହେଲେ ତୁମର କେତେ ଆନନ୍ଦ ହେବ । କେତେ ସୁଖରେ କେତେ ସ୍ୱଚ୍ଛନ୍ଦରେ ତୁମେ ସଂସାର କରିବ ।" କହୁ କହୁ ତାଙ୍କର ମସ୍ତିଷ୍କ ଉତ୍ତପ୍ତ ହୋଇ ଉଠିଲା । ସେ ଆହୁରି ଟିକିଏ ଉଗ୍ର, ଆହୁରି ଉତ୍କଟ ସ୍ୱରରେ କହିଲେ, "କିନ୍ତୁ ଚିନ୍ମୟୀ, ତୁମର ଆଶା ଆକାଂକ୍ଷା ଏତେଶୀଘ୍ର ପୂରଣ ହେବନାହିଁ । ତୁମେ ଜାଣ, ଏଥରି ମୁଁ ଲକ୍ଷେ ବର୍ଷ ବଞ୍ଚି ରହିବାକୁ ଚାହେଁ । ବଞ୍ଚିରହି ତୁମ ସହିତ ଲଢ଼ି, ତୁମଠୁ ଟଙ୍କା ସୁନା ଭୂସମ୍ପତ୍ତି ନେଇ, ସାଧାରଣରେ ବିତରଣ କରି ଦେବାକୁ ଚାହେଁ । ତୁମେ କହିବ ମୁଁ ଦେବିନାହିଁ, ନ ଦେବାକୁ ତୁମେ କିଏ, ଚିନ୍ମୟୀ ? ଆଇନ୍ ଅଛି, ଅଦାଲତ ଅଛି, ତୁମେ ଅଦାଲତରେ ଠିଆହୋଇ ମୋର କୌଣସି ହକ ନାହିଁ ବୋଲି କହିପାରିବ ନାହିଁ । ଚିନ୍ମୟୀ ! ବର୍ତ୍ତମାନ ତୁମେ ଯେଉଁପରି ମୋର ଖୋରାକ ପୋଷାକର ବ୍ୟବସ୍ଥା କରୁଛ, ମୁଁ ! ନା ନା ! ମୁଁ ନୁହେଁ ! ମୁଁ କିଛି କରିପାରିବ ନାହିଁ, ଅଦାଲତ ତୁମପାଇଁ ସେଇପରି ବଞ୍ଚିବା ଉପାୟ ସ୍ଥିର କରିଦେବ ।"

ଉତ୍ତରପାଖ ଝରକା ଆଡ଼ୁ ବହିଆସିଲା ଥଣ୍ଡା ହାଉଆ । ଗୋପାଳ ଶୀତର ତାଡ଼ନାରେ କମ୍ପି କମ୍ପି ଜାନୁଜଙ୍ଘ ହୋଇ ବସିପଡ଼ି କାତରହୋଇ କହିଲେ, "ଚିନ୍ମୟୀ, ପୁରୁଣା କୁର୍ତ୍ତାଟାକୁ ଚିଣିପୁରୁର ଯୋଗୀ ଗୋଟାକୁ ଦେଇଦେଲ, ଶୀତରେ ଦେହ ଥରୁଛି ।"

"ମଣିଷଟା ବାୟାଟାଏ । ଦେଲା ତ ଦେଲା ଗଲା । ଏ ଘର ଦରିଦ୍ର ପାଖ ଯୋଉଠେ ଥିବ ପର ହାତକୁ

ବଢ଼େଇଦେଲେ ଜମିଉଠିବ । ହେଇଟି ସେଦିନ ଦଶମୁକା କଉଡ଼ି ଦେଇ ଅଙ୍ଗିଟା କଣି ଆଣିଥିଲି କାର୍ତ୍ତିକ—”

ହଠାତ୍ କାର୍ତ୍ତିକର ନାଁ ଶୁଣି ଗୋପାଳ ବଡ଼ ଆଶାସ୍ପୀ ଭାବରେ ପଚାରିଲେ, “କାର୍ତ୍ତିକ ଆଉ ମୋ ପାଖକୁ ଆସିପାରିବ ନାହିଁ, ଚନ୍ଦ୍ରା ? ସେ ଗଲାଠୁ ମୁଁ ବଡ଼ ଅଭାବ ବୋଧ କରୁଛି—”

“ଏଁ ଶୁଣମ ମଣିଷଟାର କଥା ! ଏଇକ୍ଷଣି ଲଙ୍କାଗଡ଼ ଜୟ କଲାପରି କଳକଳା ନାଦ କରୁଥିଲ, ଏଇକ୍ଷଣି ଶୋକ ବାହାରିଲାଣି ।” “କାର୍ତ୍ତିକ ଆସିବନାହିଁ ! ସେମାନେ ଟଙ୍କାଟା ଆସୁଥିଲା ଯେ ସଂସାର ଯାକର ଧଡ଼କ ବଢ଼ୋଉଥିଲା । କି ଚୁଲି ନେଖା ନେଇଁକରି ତ ସେତକ ମଧ୍ୟ ଗଲା । ଏଥର ଧିରିଧାର ହୋଇ ମୁଠେ ଖାଇ ମୋଡ଼ମାଡ଼ି ହେଇ ପଡ଼ିଥ । ନାଉକ ଦେଇପକାଇଲା, ନାଉକ ଦେଇପକାଇଲା ବୋଲି ତମମାନଙ୍କର ଛାତି ଫାଟି ଯାଉଥିଲା, ଆଖି ଫୁଟିଯାଉଥିଲା ଯେ ମୋ ପିଲା ଏବେ ବେଭାର କରୁଚି, ତାର ସେ ହଜାର ହଜାର ଆଣୁଚି । ଅଣୁଚି ବୋଲି ତାର ସେ ରଖିବ ନା, ମୋ ପେଟକୁ ଦବକିଆଁ । କିଏଚି ଭାଗ ନେବ । ଭାଇ ଭାଗ ନେଇଗଲା ଯେ ସବୁ ମଦ ଖଟିରେ, ଗୁଲି ଖଟିରେ ପଶିଲା । ଆଉ ନପୁ ଆସିଛି କୋର୍ଟକୁ ଯିବ, ମୋଠୁ ଭାଗ ନବ ।”

ଚନ୍ଦ୍ରା ଚାଲିଗଲାପରେ ଗୋପାଳ କେତେ ସମୟ ଯାଏ ଭାବନାଶୂନ୍ୟ ଭାବରେ ବସିଲାପରେ ମଥାଟେକି ଚାହିଁଲେ ବାହାରକୁ । ମୁହୂର୍ତ୍ତକେ ପୁଣି ତାଙ୍କ ମନରେ ଜାଗିଉଠିଲା ସୃଷ୍ଟିକଳ୍ପନା । ସେ ଦେଖିଲେ ସୃଷ୍ଟିର ରଙ୍ଗଭୂମିରେ ଲାଗିଛି କେତେ ପ୍ରକାର ଅଭିନୟ । ରାସ୍ତାରେ ଯୋଡ଼ିଏ ଛୋଟ ବାଳକ ଲାଗିଛନ୍ତି ଖଡ଼ଗୋଟାଲ ଗୋଟିକ ପାଇଁ ଟଣାଓଟରା, ଗଡ଼ାଗଡ଼ି ଯୁଦ୍ଧ । ଯାହାର ବଳ ଅଧିକ ସେ ଅନ୍ୟଟିକୁ ତାର ଖେଳର ସାଥୀହେଲେ ସୁଦ୍ଧା ତଳେ ଗୋଟେଇଦେଇ ନେଇଯାଉଛି ଖଡ଼ଟି, ଅନ୍ୟଟି ଚିତ୍କାର କରୁଛି ପ୍ରାଣପଣେ; ସେଇ ପାଖରେ ପଣ୍ଡାଘର ଡିଙ୍ଗାରେ ଗାଈ ଦୁଇଟି କୁଣ୍ଡା ଖାଉ ଖାଉ, ଚୌଧୁରୀଘର ଗୋରୁଟା ଆସି ଜବରଦସ୍ତି ଖାଇ ଯାଉଥିଲା, ବୁଢ଼ୀ ପଣ୍ଡିଆଣୀ ଦୁଆର ମୁହଁକୁ ଆସି ବିସ୍ତୁକ ଗାଳିଦେଲା ଚୌଧୁରିଆଣୀକୁ ।

ସେ ପାଖର ପାତ୍ରୀଘର ଦୁଇଭାଇ ଲାଗିଛନ୍ତି ବାକ୍‌ଯୁଦ୍ଧରେ, ଧାନଘର ଚାବିଟା ବଡ଼ଭାଇ ସାନ ଭାଇକୁ ଦେଉନାହିଁ ବୋଲି । ପଶୁ ପକ୍ଷୀ ଲାଗିଛନ୍ତି ନିଜର ଆହାର ଅନ୍ୱେଷଣରେ । ମନୁଷ୍ୟ ଚାଲିଛି ନିଜର ଅଗ୍ରଗତି ପଥରେ । ନିଜର ଅଭିବୃଦ୍ଧି କାମନାରେ, ଆନନ୍ଦରେ ଉନ୍ମତ୍ତ ହୋଇ ଧାଇଁଛନ୍ତି ବହୁଳ ଜନତା—

ଗୋପାଳ ଆଉ ଟିକିଏ ମୁହଁ ବଢ଼େଇ ଦେଖିଲେ ସପନା ମିଶ୍ରଙ୍କ ଦୁଆର ପାଖରେ ଠିଆହୋଇଛି ରମା । ପିଲାଏ ଏକାସାଙ୍ଗରେ କେତେ ଖେଳନ୍ତି । ବୟସ ପନ୍ଦରଶେ ଡେଇଁ ଗଲାଣି ବର୍ତ୍ତମାନ୍ ରମାର । ତାର ଛୋଟ ନାତି କି ନାତୁଣୀ ହୋଇପାରେ ଧରିଛି କାଖରେ । ରମା ଗୋପାଳଙ୍କ ଆଡ଼କୁ ଚାହିଁଦେଇ ସେଇ ଯୌବନ ସମୟରେ ଯେଉଁଭଳି ଦେଖିଦେଲେ ଲଜ୍ଜାରେ ଜୁଡ଼ୁ ସୁଡ଼ୁ ହୋଇ ମୁଣ୍ଡର ଲୁଗା ଟାଣିଦିଏ, ଠିକ୍ ସେଇପରି ଅଧପାଚିଲା ବାଳ ଉପରେ ଅଞ୍ଚଳ ଟାଣିଦେଇ ଚାଲିଗଲା ଭିତରକୁ । ମୁହୂର୍ତ୍ତକ ପାଇଁ ଗୋପାଳଙ୍କ ମନଟା ପୁଣି ହୋଇଗଲା ସରସ । ସେ ରମାକୁ ନାୟିକା କରି ଗଳ୍ପ ଲେଖିବାକୁ ଖୋଜି ବସିଲେ କାଗଜ କଲମ ।

ଦୁଖି ଦୁଆର ମୁହଁରେ କୋକର କାନପାଖରେ ସବୁପ୍ରକାର ଉପଦେଶ କଥାଗୁଡ଼ିକ କାନ୍ଦି ଭିତରକୁ ଠେଲିଦେଇ ଚାଲିଯାଉଥିଲା, କୋକ ଫେରିପଡ଼ି ଦୁଖିର ହାତ ଧରିପକେଇ କହିଲା, “ନାହିଁରେ ଦୁଖି, ଏସବୁ କାମ ମୋ ହାତରେ ହବନାହିଁ ।”

ଦୁଖି ରାଗିଯାଇ କହିଲା, “କାମ ହବନାହିଁ, ଖାଇବା ହବ । ନିତି ଦଶ ଟଙ୍କାର ମଦ ଗିଳିବ, କହୁଛି ଏ କାମ ହବନାହିଁ । ଏ ପୁଅ ଏକାଥରକେ ଆଉ ସତୁଆ ପଣିଆଁଟା ଦେଖେଇ ହ’ ନାରେ ।”

“ତୁ ବ୍ରହ୍ମପୁର ପଳେଇ ଗଲେ ମୁଁ ଏସବୁ କରିପାରିବ ନାହିଁ ।”

"ଆରେ ! ତତେ କହୁଛିପରା ! ମୁଁ ଏଇ ଶୀତଳେଇଠେ ଅଛି, ସନ୍ଧ୍ୟାବେଳକୁ ଚୋର ଯାହା ଦରକାର ଧରି ଆସିବି । ଦିନେ ଦିଦିନ ଭିତରେ ଯିମିତିହେଲେ କାମଟା କରିନେବାକୁ ହେବ । ଠିକ୍ ସନ୍ଧ୍ୟାବେଳକୁ ଆଈ ରୋଷେଇ ଘରେ, ବୋହୂପିଲା ହେଲିକା ସବୁତ ରୋଷେଇ ଘରେ ଥିବେ । ତୁତ ଥିରିକରି ସିନ୍ଦୁକଟା ଖୋଲିଦେଇ ଷ୍ଟେଟ ପେଡ଼ିଟାରୁ ସୁନାଟା ନେଇ ଆସିବୁ । ମୁଁ ଜାଣିଛି ଆଈ ସେଦିନ କହୁଥିଲେ, ହାତପେଡ଼ିଟାରେ ସବୁ ରଖିଛନ୍ତି । ମୁଁ ଏଇ ପିଣ୍ଡାତଳେ ଥିବି, ତୁ' ଆସିବା ଦେଖିଲେ ଆସିବି । ମୋ ହାତରେ ସୁନାଟା ଦେଇଦେବୁ, ତାପରେ ଆଉ ଦୁଇ ଚାରିଦିନ ଗଲାପରେ ଆଈଙ୍କୁ କହିବୁ 'ମୋର ମୁଦି ଦି'ଟା ସିନ୍ଦୁକରେ ରଖିଦିଅ ଆଈ—ସେତେବେଳେ ଆଈ ଜାଣିବେ ସୁନା କିଏ ନେଇ ଯାଇଛିବୋଲି ।"

"ତୁ ଆଚ୍ଛା କଥା କହୁଛୁ ! ଆଈ ମୁଣ୍ଡଟିକି ଫଟେଇଦବ—"

"ଗଧ ! ତୁ ତ ନିଶ୍ଚିନ୍ତରେ ଟିକିଏ ପିଇ ଗଣ୍ଡିଏ ଖାଇ ଦିନସାରା ଶୋଇବୁ । ତତେ ଆଈ ସନ୍ଦେହ କରିବ କିରେ ! ତୋ ଆଈ ତୋ ଅଜାଙ୍କୁ ସନ୍ଦେହ କରିବକରେ କୋକ ! ଶୁଣିଲୁ, ସୁନା ପୁଅପରି ଏତକ କାମ କରିଦେ ଗଲା, ମହା ସୁଖରେ ଆଉ ବର୍ଷେ କି ଛ' ମାସ ସୁପ୍ରସନ୍ନା ଘରେ ରହିବୁ ।"

ବଶୁ ପାଦରେ ତେଲ ହାତଟା ବୁଲେଇ ଦେଉଥିଲା । ନିଆଁ ଉମେଣ୍ଢି ପାଖରେ ଗୋଡ଼ ଦୁଇଟା ଲମ୍ବେଇଦେଇ ଚନ୍ଦ୍ରାଦେବୀ ବସିଥିଲେ । କୋକ ଦୁଆର ପାଖରେ ଡାକିଲା ଆଈ ! ଚନ୍ଦ୍ରା ମୁହଁ ଫେରେଇ କାରୋସିନ ଡିବିର କ୍ଷୀଣ ଆଲୋକରେ କୋକର ମୁହଁକୁ ଚାହିଁ କହିଲେ, "ଏହେ ! ଏ କିସ ହେଇଚୁରେ କୋକ ! ଏ ସେ ମୁହଁ ଦେହ କୁଆଡ଼େ ଗଲା, ଆଖିରେ ଅଡ଼େ ଅଡ଼େ ଚାଉଳ ଧରିବ, ନିଶାଖିଆ ମଣିଷପରି ଆଖି ଢୁଳୁଢୁଳୁ ହୋଉଚି, କି ବେମର କରିବୁରେ କୋକ ? ଆ ଆ ଘରକୁ ପଳେଇ ଆ ।"

ମାଗି ଆଣିଲା ତଅଣ ସୋଡ଼େ କେ । ଦୁଷ୍ଟ ସେତେକସାକ କଥା କହିଥିଲା, କୋକ ସେଥିରୁ ଦଶ ଭାଗରୁ ଭାଗେ ମଧ କହିପାରିଲା ନାହିଁ । ଚନ୍ଦ୍ରା ଉଠିପଡ଼ି କୋକର ପିଠିରେ ହାତବୁଲେଇ ପଚାରିଲେ, ଦିହ ସୁଖ ନାଇଁକିରେ କୋକ ? କାଇଁକି ଇମିତି ଦିଶୁଚୁରେ ?

କୋକ ମୁହଁ ଫେରେଇ କହିଲା "ଦେହ ଭଲ ଲାଗୁନାହିଁମ ।"

ଇମିତି ଜାଉଁ ଜାଉଁ କରି କାଇଁକି କଥା କଉଚୁରେ, ଚାଲେ ଚାଲେ ଖାଇବାକୁ ଚାଲେ ।

କୋକର ସ୍ତ୍ରୀ ସେବନ୍ତୀ ଅସ୍ୱାସ୍ଥ୍ୟଯୋଗୁଁ ସ୍ଥାନ ପରିବର୍ତ୍ତନ କରିବା ନିମନ୍ତେ ଯାଇଥିଲା ବାପ ଘରକୁ ଚମ୍ପାପୁରୁ । ଚମ୍ପାପୁରଠୁ ସେବନ୍ତୀର ମକରର ବର ବ୍ରହ୍ମପୁରଠେ ପୋଲିସ ଇନସ୍ପେକ୍ଟରର କାମ କରୁଛି, ସେବନ୍ତୀ ମକରଠୁ ସ୍ୱାମୀର ସୁକାର୍ଯ୍ୟାବଳୀର ସବୁଟିକି ଜାଣିକି ନପାଇଲେ ମଧ ମକରଠୁ କିଛି କିଛି ଶୁଣି ଦୁଃଖ ଅଭିମାନରେ କାନ୍ଦି କାନ୍ଦି ରହିଛି ।

ଆସିଲାବେଳେ ବାଟରେ ଦୁଷ୍ଟ ଯାହାଟିକିଏ ଦେଇଥିଲା, କୋକର ସେଇଟିକି ନିଶା ଖାଇପାରିଲା ବେଳକୁ ପ୍ରାୟ ଛାଡ଼ି ଆସିଲାଣି । ସେ ଆଉ କୁଆଡ଼କୁ ନଯାଇ ଖାଇସାରି ବିଛଣାରେ ପଡ଼ିଗଲା । ସକାଳ ପହରେ ବେଳକୁ ଉଠି ଗାଧୋଇ ଗଲାବେଳେ ଶୀତଳେଇଙ୍କ ପାଖରେ ଦୁଷ୍ଟ ସହିତ କଥାହୋଇ ଆସିଲା ।

ଅନ୍ଧାରିଆ ଟମ୍ପୁରି ଭିତରେ କାନ୍ଥ ଆଡ଼କୁ ମୁହଁକରି କୋକ ଶୋଇଥିଲା, ଚନ୍ଦ୍ରାଦେବୀ ବିଛଣାରେ ବସିପଡ଼ି କହିଲେ, "ତୋ ଅଜା ଯାହା ହୋଇଛନ୍ତିରେ କୋକ ! ସେ ଦୁଷ୍ଟ ଟୋକର ଭଣ୍ଡ କଥା କହିବା ଦିନଠୁ ସୁନାଗୁଡ଼ାକ ବଡ଼ ସିନ୍ଦୁକରେ ରଖିଦେଇଛି ।"

କୋକ ଏତିକିବେଳେ ବୁଦ୍ଧି ଖରଚ କରି ପଚାରିଲା "ସୁନାତ ସିନ୍ଦୁକରେ ରଖିଛୁ, ଚାବିଟା କୋଠେ ରଖିଚୁ ? ଚାବିଟା ପକେଇ ଦେଇଥିବୁ । ସେ ଆଡ଼େ ତୁ ଅଜା ସାଙ୍ଗରେ ପରସାଟିକୁ ଯୁଦ୍ଧ

କଲାବେଳକୁ ସୁନାଗୁଡ଼ାକ ଏଆଡ଼ୁ କିଏ ନେଇଯାଇ-ଥିବ । ଗୁଡ଼ାକ ଭଲ ଯାଗାରେ ରଖିଲେ ହବନା !”

“ଆହା, ତୋ ଆଈ ଫିଙ୍ଗିଦେବା ମଣିଷ କରେ ? ତୋର ଏଇ ଖଟ ଉପରେ ମୁଚୁଳାତଳେ ରଖି ଦେଇଛି ।”

କୋକ ଆନନ୍ଦରେ ମୁହଁ ଘୋଡ଼େଇ ପକେଇ କହିଲା “ତୁ ଏଠୁ ଯା’ ଲୋ ଆଈ, ମତେ ବଡ଼ ନିଦ ଲାଗୁଛି ।”

“ହଁ ହଁ ଶୋଇ ପଡ଼ । ଧାଇଁ ଧାଇଁ ଶୁଖି ଗଲୁଣି, ଶୋଇ ପଡ଼ । ବୋହୂପିଲା ଏଣ୍ଡୁରି କରୁଛି । ମୁଁ ଯାଉଛି ନଗ୍ଧକ, ଆସିଲେ ଖାଇବାକୁ ଦେବି ।”

ସନ୍ଧ୍ୟା ହେଲା ପରେ କୋକ ବିଛଣାରୁ ଉଠି ଦାଣ୍ଡକୁ ଆସିଲା । ଦୁଖି ମଇଳା ଗୁଦରଟା ଘୋଡ଼େଇ ଧୋବେଇ ପଧାନ ସାଜି ଦାଣ୍ଡରେ ଏପାଖ ସେପାଖ ହେଉଥିଲା ।

“କଣ କିଛି ହେଲାକିରେ କୋକ ?”

“କୋଠେ ଥିବା କଥା ଜଣା ପଡ଼ିଲା ଯେ ଆଈଟା ତ ଘରୁ ବାହାରୁ ନାହିଁ, ନେବି କମିତି ?”

ଦୁଖି ଟିକିଏ ରହି କହିଲା, “ହେଉ ତେବେ, ମୁଁ କାଲି ସକାଳୁ ସବୁ ଠିକ୍ କରିଦେବି ।”

ଚନ୍ଦ୍ରାଦେବୀ ବଡ଼ ସକାଳୁ ଉଠି କୂଅ ପାଖର ଦୁବ ମୁଠେ ଉପାଡ଼ି ଫିଙ୍ଗିଦେଇ ସେ ପାଖ ଆଡ଼କୁ ଗୁହିଁଲା ବେଳକୁ ଶିଶୁଆ ମା’ ଠିଆ ହୋଇଛି । ଚନ୍ଦ୍ରାଦେବୀ ଦୁଃଖିତା ହୋଇ କହିଲେ, ‘ଶିଶୁଆ ମାଲୋ, ଏ ରାତିଟାରେ ସପନ ଦେଖିଲି, ମୋ କୋକ ଖାଲି ତେଲ ଗୁଡ଼ାକ ପିଇ ପକେଉଛି, ରକ୍ତ ବାନ୍ତି କରୁଛି ବୋଲି ଯେ, ବଡ଼ ଅସାର ସପନଟା, ନାଇଁ ?”

ଶିଶୁଆ ମା’ କୋକର ସମ୍ବାଦ ଜାଣେ । ସେ ମନେ ମନେ ହସି ସହାନୁଭୂତି ଦେଖେଇ କହିଲା, “ହଁ ହେ ଭାଉଜ, ତେଲ ସପୁନଟା ଅସାର ଯେ, ଠାକୁରାଣୀଙ୍କି ଭୋଗଟେ ପଠେଇ ଦିଅ । ଶିଘ୍ର ଖଣ୍ଡନ ହୋଇଯିବ ।”

ଚନ୍ଦ୍ରା ଦୁଃଖିତା ଅନ୍ତଃକରଣରେ ଗାଧୋଇ ଆସି ଇଷ୍ଟଦେବତା ପାଖରେ ଦିଅ ଧୂପ ଜାଳିଦେଇ, ବଣୁକୁ ପଠୋଉଥିଲେ ଠାକୁରାଣୀଙ୍କ ପାଖକୁ । ଦୁଖି ଅତ୍ୟନ୍ତ ସମ୍ଭ୍ରାନ୍ତଭାବରେ ଘରେ ଢୁକି କହିଲା, “ଆଈ, କଣ କହିବି !”

“କଣ ହେଲାରେ ଦୁଖି ?”

“କଣ ଆଉ ହବ, ଆଉ ତୁଣ୍ଡରେ ନ ଧରିବା କଥା—”

“କିରେ କଣ ହେଲା କଉନୁ । ଟଙ୍କା ନଷ୍ଟ ହେଲା କିରେ ?”

“ଟଙ୍କା ନଷ୍ଟ ହେବା କଥା ଥିଲେ କିଏ ପଚାରୁଥିଲା, ଆଈ—”

“ଆଉ କଣ ହେଲା କଉନୁ ଦୁଖି !”

“ମୁଁ ଆଜ ରାତିରୁ ବ୍ରହ୍ମପୁରଠୁ ବାହାରିଲି । ଆସିଲା ବେଳକୁ ଜ୍ୟୋତିଷ ଗୋଟେ ଡାକୁଥିଲା—”

“ଏ ! ସେ ସର୍ବଜାଣ କିସ କହିଲାରେ, ଦୁଖି ?”

ଦୁଖି ଶୋକ ବିଷାଦରେ ଅଭିଭୂତ ହୋଇ କହିଲା, “ସବୁ ସେଇ କୋକର କଥା ।”

“ମୁଁ କି କରିବି, ମୁଁ ତ ରାତିରେ ସପନ ଦେଖିଛିରେ ଦୁଖି ! ମୋ କୋକ ଲାଗିଁ ଥାଉରେ, ଜଳଜଳା ଅନନ୍ତିଆ ତ ପଡ଼ିଶା ଘରେ ଗୁହିଁ ରଇଚିରେ ।”

“ଆଈ ! ଜ୍ୟୋତିଷଟା କମିତିଜାଣିଲା ? ମତେ ପଚାରିଲା ତୁ କୋଠିକି ଯାଉଚୁ, ମୁଁ କିଛି କହିନି । ସେ ତ ସେକ୍ଷଣି କହିଦେଲା: ତାକ ନାଁ କୋକ, ଭଲ ନାଁ ବିଭୂତିଭୂଷଣ । ତୁ ତାର ବଡ ବିଶ୍ୱାସୀ ସାଥୀ । ଦି’ ଜଣ ଏକା ସାଙ୍ଗରେ ବ୍ୟବସାୟ କରୁଛ । ତମ ନାଁଟା ମଧ୍ୟ କହିଦେଲା ଆଈ—ମୁଁ ଆଉ କଣ କହିବି ଆଈ— ଦୁଃଖରେ ଛାତି ଫାଟିଯାଉଛି । କହିଲା ସେ କୋକର ଆୟୁଷ ଆଉ ଛ’ଦିନ—”

ଚନ୍ଦ୍ରା ଦୁଖିର ପାଟି ଚିପିଧରି କହିଲେ, “ଆଉ କିଛି କହନାଁରେ । ମୋ କୋକକୁ ଆୟୁଷ କଣିକେ କୋଉ ଦିଅଁ ଦେବତା ଦେବେରେ ଦୁଖି ?”

"ସେଇ କଥା କହୁଛି ପରା ଆଈ । ଜ୍ୟୋତିଷଟା ସେକଥା କହିଲା, ଏ କଥା ମଧ୍ୟ କହିଲା । ମଙ୍ଗଳବାର ତିନିସନ୍ଧ୍ୟା ବେଳେ ଦେବୀଙ୍କ ସ୍ଥାନରେ ତିନୋଟି ମନ୍ଦାର ଫୁଲ, ତିନୋଟି କନିଅର ଫୁଲ, ତିନୋଟି ରକ୍ତ ବର୍ଣ୍ଣ ବସ୍ତ୍ର, ତିନିଗୋଟି ଘୃତ ପାଚିତ ପିଷ୍ଟକ—"

"ଘୃତ ପାଚିତ ହୋଇଲେ କଣରେ ?"

"ଘିଅରେ ଭଜା ହୋଇଥିବା ପିଠା: ଏ ସବୁ ନେଇ ତିନିଦିନ ଯାଏଁ ତ୍ରିସନ୍ଧ୍ୟାରେ ପୂଜା କରିବେ ।"

ହେଲେ ଆଈ କିଛି ହବନି । ଏକାଥରକେ ଦୀର୍ଘାୟୁ—ଶହେ କି ଦୁଇଶ ବର୍ଷ ଆୟୁଷ ବଢ଼ିଯିବ ।

× × ×

ଚନ୍ଦ୍ରାଦେବୀ ଶୀତଳେଇଙ୍କ ପାଖକୁ ଯାଇଛନ୍ତି । ବୋହୂ ପିଲାଟାକୁ ମଧ୍ୟ ନେଇଯାଇଛନ୍ତି । ମା ଠାକୁରାଣୀ ପାଖରେ କୋକର ଆୟୁଷ କଥା ଜଣେଇବ ବୋଲି । କୋକର ଶୋଇବା ଘର କାନ୍ଥରେ ଦୁଖୀ ଠୁକ୍ ଠୁକ୍ କରି ଶବ୍ଦ କଲା । କୋକ ତେଣିକିବେଳେ ସ୍ୱପ ଖୋଜୁଥିଲା । ବନ୍ଦ ଝରକାଟା ଅଳ୍ପ ଖୋଲିଦେଇ କହିଲା, ଅଳ୍ପ ଟିକିଏ ରହରେ ସ୍ୱପଟା ଖୋଜୁଛି ।

କୋକ ଫେରିଆସି ବଡ଼ ସିନ୍ଦୁକ ଖୋଲି, ଛୋଟ ସିନ୍ଦୁକରୁ ଦୁଇଟିଯାକ ଫରୁଆ ଧରି ଯାଇ ଦାଣ୍ଡ ଦୁଆରେ ଠିଆହେଲା । ଦୁଖୀ ଅତି ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଫରୁଆ ଦୁଇଟି ଝୁଡ଼ିଭିତରେ ଗୁଡ଼େଇ କାଖତଳେ ଧରି କହିଲା, "ମୁଁ ଯାଉଛି, ଏଇ ରାତି ବସ୍‌ରେ ବ୍ରହ୍ମପୁର ଚାଲିଯିବି । ତୁ ପଅର ଦିନ ଆସିବୁ । ଶୀତଳେଇଙ୍କ ସେବକ ପାଖରେ ଦି'ଟା ବୋତଲ ରଖି ଦେଇଛି । ମୁଁ ଗଲି, ଦି'ଦିନ ପରେ ଆସିବୁଟି । ମୁଁ ସୁନାଟା ନେଇ ସୁପ୍ରସନ୍ନାକୁ ଦେଇ ଦେବି ।" କୋକ ମନେ ମନେ ଆଶ୍ୱସ୍ତିବୋଧ କରି କହିଲା "ଦି'ଜଣ ଯାକ ଏକା ସାଙ୍ଗରେ ଯାଇଥାନ୍ତେ । ମୁଁ ତ ତାଙ୍କୁ ନ ଦେଖିଲେ ରହିପାରୁ ନାହିଁ ।"

ଦୁଖୀ ଧମକେଇ କହିଲା, "ଆଉ ଗୁଡ଼ାଏ ପ୍ରେମ ଦେଖେଇ ହେନା, ଆଈ ଜାଣିଲେ ତୋ ପଛେ ପଛେ ବ୍ରହ୍ମପୁର ଧାଇଁ ଯିବ । ଏକାଥରକେ ଚୋର ଦୋଷରେ ପୋଲିସ୍ ଏରେଷ୍ଟ କରି ନେଇଯିବ । ସେତେବେଳେ ତାକୁ ଆଉ ଦେଖିବୁ ଯେ ।" ଦୁଖୀ ଚାଲିଗଲା ପରେ କୋକ ନବାକ ହୋଇ ମୁହୂର୍ତ୍ତେ ଠିଆହୋଇ ଫେରି ଆସି ପୁଣି ଯଥା ସ୍ଥାନରେ ଶୋଇବାକୁ ଯତ୍ନକଲା ।

ଦୁଖୀକୃଷ୍ଣ ଶୀତଳେଇଙ୍କ ସମ୍ମୁଖରେ ଝାଙ୍କରା ବରଗଛ ଶିଅ ଉପରେ ବସି ଡବା ଦୁଇଟା, ଝୁଡ଼ିର ପୁଟୁଳାଟା ତଳେ ଥୋଇ ଦିଆସିଲି ଜଳେଇ ଅନ୍ୟ ହାତରେ ଡବା ଖୋଲିଲା । ଡବା ଭିତରୁ ହାରଟା ଉଠେଇ ଅନେଇଁ ଦେଲା । ଦେଖିଲା ଗିନି ସୁନାର ବଡ଼ ବଡ଼ ହାର ଦି'ଟା ନିଭି ଆସୁଥିବା ଆଲୁଅରେ ଝଲମଲ ଦିଶୁଛି । ଆଉ ଗୋଟାଏ କାଠି ଜାଳି ଦେଖିଲା । ସବୁଗୁଡ଼ିକ ଗହଣା ଭରି ଭରି, ଆଉ ମାନ୍ଦ୍ରାଜ ପ୍ୟାଟନରେ ତିଆରି । ସେ ତରତର ହୋଇ ଦିଆସିଲିଟା ଫିଙ୍ଗିଦେଇ, ଡବା ଦି'ଟା ଝୁଡ଼ିରେ ଭଲ ଭାବରେ ବାନ୍ଧି ପକେଇ ବାହାରି ପଡ଼ିଲା ବ୍ରହ୍ମପୁର ରାସ୍ତାରେ । ଦୁଇ ଚାରି ମାଇଲ ଯିବା ପରେ ଦେଖିଲା, ମାଲ ବୁହା ଲରୀଟା ରାସ୍ତାରେ ଅଟକି ଯାଇଛି । ଡ୍ରାଇଭରଟା ଖୁଡ଼ଖାଡ଼ କରୁଛି । ଦୁଖୀ ଡ୍ରାଇଭର ସହିତ ବନ୍ଧୁତ୍ୱ କରି ଅଳ୍ପ ସମୟରେ ଲରୀଟାକୁ ଚାଲିବା ଉପଯୋଗୀ କରିଦେଲା । ଦୁଖୀ ଡ୍ରାଇଭର ପାଖରେ ବସି ଦାମି ସିଗ୍ରେଟ ଗୋଟାଏ ହାତକୁ ବଢ଼େଇଦେଲା । ଲରୀ ଏକବାରେ ସିଧାଗଲା ଷ୍ଟେସନକୁ । ଦୁଖୀ ତରତର ହୋଇ ଦଉଡ଼ିଯାଇ କଲିକତା ଗାଡ଼ି କଥା ପଚାରିଲା । ଟିକଟ ମାଷ୍ଟ୍ରେ ଟିକଟ ଦେଉ ଦେଉ କହିଲା, ଏକ୍ଷଣି କଲିକତା ପାସେଞ୍ଜର ଟ୍ରେନ ଛାଡ଼ିଦେବ । ଦୁଖୀ ଦୁଇଟା ଦଶ ଟଙ୍କିଆ ନୋଟ ଫିଙ୍ଗିଦେଇ ଟିକଟ ଧରି ଦୌଡ଼ିଯାଇ ବସିଗଲା ଟ୍ରେନରେ ।

ଦୁଇ ଦିନ ପରେ କୋକ ସୁପ୍ରସନ୍ନାର ଘରକୁ ଯାଇ ହସି ହସି ପଚାରିଲା ହାରଗୁଡ଼ାକ ପିନ୍ଧିନାହିଁ ? ସୁପ୍ରସନ୍ନା ଚାହିଁଲା ହସି ହସି କହିଲା, "କୋଉଁଠି ଶୋଇ ଶୋଇ ଆଜି ହାର ସ୍ୱପ୍ନ ଦେଖି ଚାଲି ଆସିଲ ହୋ ରସିକ । ହାରକୁ ଦେଖ, ଆଉ ଯାଙ୍କୁ ଦେଖ ।" କୋକ ଗମ୍ଭୀର ଦୁଃଖରେ ପଚାରିଲା, "ଦୁଖୀ—"

"ସୁଖ ସଧାଙ୍କ ପାଖରେ ଥିବ ।"

"ସବୁଗୁଡ଼ାକ ସୁନା ତା ହାତରେ ଦେଲି— "

"ଦେବା ଲୋକକୁ ଫେରାଇବ ଯାଅ ।"

## ଷୋହଳ

ଗୋପାଳଙ୍କ ଶୋଇବା ଘରେ ଅନ୍ୟ ଲୋକର ସ୍ୱର ଶୁଣି ଚନ୍ଦ୍ରା ଶୋଇବାରୁ ଉଠିଯାଇ ପଚାରିଲେ "କିଏ ରେ ?" ଅନନ୍ତ ଚନ୍ଦ୍ରାଙ୍କ ମୁହଁକୁ ନ ଚାହିଁ କହିଲା, "ସନ୍ନ୍ୟାସୀ ବିଶ୍ୱାଳ ଏଇକ୍ଷଣି ଯାଇ କହିଲା ଭାଇନା ଦୁଧ ଟିକିଏ ପିଇବାକୁ ଇଚ୍ଛା କରୁଛନ୍ତି ବୋଲି ଯେ, ବଡ଼ ବୋଉ ଏଇ ଦୁଧଟିକ ଦେଇଛି—"

ଚନ୍ଦ୍ରା ଝପ କରି ଅନନ୍ତ ହାତରୁ ଦୁଧ ଗ୍ଲାସଟା ଛିଣ୍ଡିଦେଇ କହିଲେ, "ଆସିଛ ଦୁଧ ଧରି । ବଡ଼ ବୋଉ ଦେଇଛି ଦୁଧ ଟିକିଏ । କୁକୁରିଆ ପୋଡ଼ାମୁହାଁ, ଯାଉଚୁନା ମୋ ଘରୁ ?"

"ଭାଇନା ତୁମେ ମତେ କେବେ ଡାକିବ ନାହିଁ । ଯଦି ତୁମେ ଇଚ୍ଛାକରିବ ତୁମକୁ ମୋ ଘରକୁ ନେଇଯିବି । ମୋର ଯେତିକି ଶକ୍ତି ସେତିକି ଦେଇ ତୁମର ସେବା କରିବି—"

"କହିଲି ପରା ମୋ ଘରୁ ଯା ବୋଲି । ସେବା କରିବ ? ସେଦିନ ସେ ସିନ୍ଦୁକ ଉପରେ ଟଙ୍କା ଭରଣିଟା ଥୋଇ ଦେଇଥିଲୁ, କେତେଓଲେ ଯାଇ ଗିନି ଆଣିଲ, ଭାଇକି ଦେଇଥିବ । ସେଇଥି ପାଇଁ ଏତେ ଆଦର କା, ସେଇ ଟଙ୍କାରେ ଭାଇନା ଭାଇନା ବୋଲି ଅଙ୍ଗୁର ଆଣିଦେଇଚ ।"

"ସଳଖଁରୁ ଭାଇନାଙ୍କ ଦେହ ଅସୁଖ କଥା, ଗୁଦର ଖଣ୍ଡେ ନଥିବା କଥା ଶୁଣି, ଗୁଦର ଖଣ୍ଡିକ ଆଣି ଦେଇଥିଲି । ବଡ଼ ବୋଉ ଅଙ୍ଗୁର ଖଣ୍ଡିକ ନେବାକୁ କହିଲା ।—"

"ତୁ ଜଳି ଯା, ତୋ ବଡ଼ ପୋଡ଼ି ଯାଉ । କାହିଁ ଆଣିଲୁ ସେ ଅଙ୍ଗୁର, ଗୁଦର, ଚୁଲ୍ଲିରେ ପକାଇ ଦେଉ ।"

ଅନନ୍ତ ଆଉ କିଛି ନ କହି ଚାଲିଗଲା ଆସ୍ତେ ଆସ୍ତେ । ଚନ୍ଦ୍ରା ଗୋପାଳଙ୍କ ମୁହଁକୁ ଚାହିଁ କହିଲେ, "ଉଠି ପାରୁନ ବୋଲି କହୁଚନ୍ତି । କୋଉଠୁ ଜମିକି ଟଙ୍କା ଆଣି ଖାଇକି ଦେଇ ପକେଇଚନ୍ତି ।"

"ହଁ ଚନ୍ଦ୍ରା, ତୁମର ସେ ଟଙ୍କା ମୁଁ ଆଣିଛି, ତୁମେ ବୁଝି ନାହିଁ । ଅଭାବରେ ପଡ଼ିଲେ ମନୁଷ୍ୟର ସ୍ୱଭାବ ନଷ୍ଟ ହୋଇଯାଏ ।"

"ଧୀରିଧୀରି ହୋଇ ଅଙ୍ଗୁର ଗୁଦର ଖାଇକି ଦେଇ ସେ ଟଙ୍କା ଆଣ, ମଲାକାଳକୁ ଆଉ ଏ ସ୍ୱାନ ବୁଦ୍ଧି କରନ । ଜଳଜଳା, ଘରରୁ ଟଙ୍କା ଲାଞ୍ଚ ନେଇକରି ଦୁଧ ଟିକିଏ ଆଣି ଦେଉଚ ।"

ଗୋପାଳ ଉନ୍ମାଦର ଭଙ୍ଗିରେ ହସି ହସି କହିଲେ, "ହଁ, ଚନ୍ଦ୍ରା, ଜଳଜଳା ଟଙ୍କା ଲାଞ୍ଚ ନେଇ ଦୁଧ ଆଣି ଦେଇଥିଲା । ତୁମେ କେତେ କଷ୍ଟରେ ଟଙ୍କାଟା ରଖିଥିଲ—"

ସେକ୍ଷଣି ପୁଣି ଗୋପାଳ ସହଜ ହୋଇ ଚନ୍ଦ୍ରାଙ୍କ ମୁହଁକୁ ଚାହିଁ କହିଲେ, "ଦେଖିଲ ଚନ୍ଦ୍ରା, ଆଜ ହଳଟା ଅକାରଣରେ ଚାଲିଯାଉଛି । ରାତିରେ ଭାବିଥିଲି ସକାଳୁ ଗଳ୍ପ ଗୋଟିଏ ଲେଖିବି ବୋଲି । ଭାଲ କି ସୁନ୍ଦର ଭାବ ଆସିଥିଲା, ମିଶ୍ର ଘର ଉମାକୁ ଦେଖି ।—ତୁମେ ଉମାକୁ ଦେଖିଛ ଚନ୍ଦ୍ରା ? ଦିଅ କାଗଜଖଣ୍ଡେ, ଦିଅ । ମୋର କଲମଟା ଏଇଠି ଥିଲା । କାଳି ଘଡ଼ିଟା ବି ଦିଶୁନାହିଁ । ଦେଖିଲ, ମୁଁ ଆଉ ଉଠିପାରୁନାହିଁ । ତୁମର ସାହାଯ୍ୟ ବିନା ମୁଁ ଆଉ କିଛି କରିପାରିବି ନାହିଁ ।" ଅତି ଆବେଗରେ ତାଙ୍କର ମନଟା ପୁଣି ଚଞ୍ଚଳ ହୋଇଉଠିଲା । ସେ ଶୂନ୍ୟ ହାତଟା ଉପରେ କାଗଜ ଜ୍ଞାନ କରି ଲେଖିଗଲେ—

"ନାଇଁଲେ ମା, ମୁଁ ଏ ନାଟ ଆଉ ଦେଖି ପାରିବି ନାଇଁ, ଯାଉଚି ଧ୍ୟାନ ମାପ ହେବ ।"

ଗୋପାଳ ଶୂନ୍ୟକୁ ଚାହିଁ କହିଲେ, "ଦେଖିବ ଚନ୍ଦ୍ରା, ମୁଁ କେତେ ଲେଖିବି, ମାସକ ଭିତରେ ଏ ଘରେ ଗଣି ଗଣି ଲେଖା ଖାତା ଜମା ହେଇଯିବ । ଖାଲି ଲେଖିଯିବି ଗଳ୍ପ ଉପନ୍ୟାସ । ସେଥିରେ ଜୀବନାଂଶ

ବର୍ତ୍ତମାନ ଆନ୍ଦୋଳନର ଆଲୋକରେଖା ଦେଖା-ଦେଇଛି; ମାନବ ମାତ୍ରେ ଏ ଆଲୋକ ଆଡ଼କୁ ଆଖି ଖୋଲି ଚାହିଁବେ । ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ହେବ । ଉତ୍କଳୀୟମାନଙ୍କର ଆଶା, ଭାଷା ବଳିଷ୍ଠ ହୋଇ ଉଠିବ ଦିନକୁ ଦିନ । ଭାରତବର୍ଷରେ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହୋଇଗଲାଣି । ସକଳ ପ୍ରକାର ଜାତିଭେଦ ଭୁଲି ବ୍ରାହ୍ମଣ ଚଣ୍ଡାଳ ସମସ୍ତେ ଏକ ମାନବ ହୁଅ ବୋଲି ଆଦେଶ ଆସିଗଲାଣି ଅବତାର-ପୁରୁଷଙ୍କଠାରୁ । ଆମର ଗତିବିଧିରେ ପରିବର୍ତ୍ତନ ଘଟିଛି । ଯଦି ବା ଅନେକେ କିଛି ଘଟିନାହିଁ ବୋଲି ଭାବିଥାନ୍ତି; କିନ୍ତୁ ପରିବର୍ତ୍ତନ କେତେବେଳେ କେଉଁ ଛଳରେ ଘର ଭିତରକୁ ଆସି ଯାଇଥାଏ, ତାହା ଗମ୍ଭୀର ଭାବରେ ଅନୁଧ୍ୟାନ କଲେ ଜଣାଯାଏ । ତୁମେ ଲେଖିଛ, ଏତେଦିନ ପରେ ତୁମେ ବୁଝିପାରିଛ ଈଶ୍ୱର ବାହାରେ ନାହାନ୍ତି, ଅଛନ୍ତି ଭିତରେ । ତାହାହେଲେ ମଧ୍ୟ ତୁମ ମନରେ ସେଇ ଚିରାଚରିତ ପ୍ରଥାଟି ପାଳନ କରିପାରୁନାହିଁ ବୋଲି କ୍ଷୋଭ ହେଉଛି । ଆମେ କେହି ତ ମୂର୍ତ୍ତିପୂଜାର ବିରୋଧୀ ନୋହୁଁ । କେଉଁ ଅନନ୍ତକାଳରୁ ଏହି ପୂଜାର ଅଦମ୍ୟ ବିଭୂତି ପରିଲକ୍ଷିତ । ଏହାର ମାଧ୍ୟମରେ ମନୁଷ୍ୟ ବିରାଟ ପରଂବ୍ରହ୍ମଙ୍କର ବାସ୍ତବ ସତ୍ତାଟିକୁ ହୃଦୟ ମନ୍ଦିରରେ ସ୍ଥାପନ କରିବା ସୁଯୋଗ ପାଏ । କ୍ରମେ ସେଇ ସାକାର ଭାବନାର ବିନଷ୍ଟ ବାସ୍ତବ ସତ୍ତା ତା' ଅନ୍ତରରେ ନିରାକାର ନିରଞ୍ଜନଙ୍କର ମହମାମୟ ସତ୍ତାକୁ, ଆକାଟ-ବ୍ରହ୍ମ-ବିଶ୍ୱବ୍ୟାପୀ ହିରଣ୍ମୟ ବିଭୁଙ୍କର ବାସ୍ତବ ପରିଚିତିକୁ, ବିଭୁଚୈତନ୍ୟର ଅଲୋକସାମାନ୍ୟ ବୈଶିଷ୍ଟ୍ୟକୁ, ଆନନ୍ଦମୟ ପରଂବ୍ରହ୍ମଙ୍କର ବାସ୍ତବ ଉପଲବ୍ଧିକୁ ପରିବେଷଣ କରିବାରେ ସକ୍ଷମ ହୁଏ । ଭୋଗରୁ ହିଁ ଯୋଗସାଧନାର ଆକାଙ୍କ୍ଷା; ସଗୁଣରୁ ହିଁ ନିର୍ଗୁଣ ଭାବନା ଜାଗ୍ରତ ହୁଏ । ଅତଏବ ଆମେ ସମସ୍ତେ, ଅର୍ଥାତ୍ ଚିନ୍ତାଶୀଳ ବ୍ୟକ୍ତି ମାତ୍ରେ ହିଁ ମୂର୍ତ୍ତିପୂଜାର ମର୍ମ ଅନୁଭବ ଏବଂ ସମର୍ଥନ କରୁ । ପରମହଂସ ମଧ୍ୟ ନିରାକାରଙ୍କୁ ସାକାର ରୂପେ ଦେଖି ବ୍ରହ୍ମସାନ୍ନିଧ୍ୟ ଲାଭକରନ୍ତି । ଜ୍ଞାନପ୍ରାପ୍ତ ହେବାଠାରେ ସାକାର-ନିରାକାର ସବୁ ହୋଇଯାଆନ୍ତି ଏକ । ଏହା ହିଁ 'ସୋଽହଂ' ଭାବନା । ପ୍ରହ୍ଲାଦ ଏଇ ଭାବନା ବଳରେ ହିଁ ଚେତନ ଅଚେତନ ସବୁ ବସ୍ତୁଙ୍କୁ ଦେଖିପାରୁଥିଲେ ପ୍ରତ୍ୟକ୍ଷ ଭାବରେ । ଏଇ ନିଗୂଢ଼ତତ୍ତ୍ୱ ପାଇବା ପର୍ଯ୍ୟନ୍ତ ମନୁଷ୍ୟ ଅନୁସନ୍ଧିତ୍ସୁ ହୋଇ ଗତିକରେ । ଏଇ ଈଶ୍ୱର ସାକ୍ଷାତର ଇଚ୍ଛା ଏବଂ ଅନୁଭୂତିକୁ ଯଦି ଜୀବନ୍ତ, ଜାଗ୍ରତ କରି ରଖା ନ ଯାଏ, ସାକାର ଭାବନା ଭିତରେ ହିଁ ଯଦି ପରିଶୀଳନ ସୀମିତ ହୋଇଯାଏ, ପ୍ରତି ନିମିଷକେ ଅଗ୍ରସର ହେବ ରେ ପ୍ରୟାସୀ ନ ହୁଏ, ସେତେବେଳେ ବାସ୍ତବ ଈଶ୍ୱର-ସତ୍ତାର ଅନୁଭୂତି ଦୂରେ ଥାଉ, ରାଧାକୃଷ୍ଣଙ୍କୁ ଅପ୍ରାକୃତ ପ୍ରେମମୂର୍ତ୍ତି ରୂପରେ ଦେଖିବା ଏବଂ ଭକ୍ତିସ୍ରୋତରେ ଭାସି ମନେକରିବା ଦୂରେ ଥାଉ, ତା' ଅନ୍ତରରେ ନାନା ସଂକୀର୍ଣ୍ଣ ଭାବନା ଦୃଢ଼ୀଭୂତ ହୁଏ । ପ୍ରକୃତ ତତ୍ତ୍ୱଟି ଉପଲବ୍ଧି କରିବା ହୁଏ ଅସମ୍ଭବ । ଅନେକ ସମୟରେ ଆମର ଇମିତି ଅବସ୍ଥା ହୁଏ ଯେ ଭଗବତ୍ ଅନୁଭୂତିଟି ରହିଯାଏ ନିର୍ଜୀବ ହୋଇ । ଆମେ ବସ୍ତୁ ପ୍ରତିମାକୁ ଭୁଲି କାଠପଥର ସମ୍ମୁଖରେ ଯନ୍ତ୍ରଚାଳିତ ପରି ଭକ୍ତିଶୂନ୍ୟ ଭାବରେ ହାତ ଯୋଡ଼ି-ଦେଉ । ତୁମେ ନିନ୍ଦା, ପ୍ରଶଂସାରେ ବିଚଳିତା ହୋଇ କ୍ଷୋଭ କରିବା ମୁଁ ଅନୁଭବ କରୁଛି ତୁମ-ଚିଠିରୁ; କିନ୍ତୁ ପୂଜା କରୁନାହିଁ ବୋଲି ଭାବୁଛ କାହିଁକି ! ମନୁଷ୍ୟ ଜ୍ଞାନପ୍ରାପ୍ତ ହୋଇ ସକଳ ପ୍ରକାର ସାଂସାରିକ ବନ୍ଧନରୁ ଆପଣାକୁ ମୁକ୍ତକରିବା ପରେ ସାକାର-ନିରାକାର ସବୁ ତା' ପକ୍ଷରେ ସମାନ । ସେ ପ୍ରତିକ୍ଷଣରେ ନିତ୍ୟ-ନିରଞ୍ଜନଙ୍କୁ ପୂଜା କରେ ମନେ ମନେ । ସେ ପରଂବ୍ରହ୍ମଙ୍କୁ ଦେଖେ ସର୍ବତ୍ର । ସେ ବନ୍ଧୁ କୁଟୁମ୍ବ ମେଳରେ ବସି ଅନ୍ତରରେ ଅନୁଭବ କରେ ଅନ୍ତର୍ଯ୍ୟାମୀଙ୍କ ମୃଦୁମଧୁର ସ୍ପର୍ଶ । ତେବେ ଏକଥା ମଧ୍ୟ ମୁଁ ସ୍ୱୀକାର କରୁଛି, ମନୁଷ୍ୟର ମନ ଏଡ଼େ ଚଞ୍ଚଳ ଯେ, ସେ ଥରେ ସଂସାର ବନ୍ଧନରୁ ମୁକ୍ତ ହେଲେ ମଧ୍ୟ ପୁନଃ ପୁନଃ ବାନ୍ଧ ହୋଇଯାଏ ସୁତରାଂ ପୁରାଣ ଯୁଗରେ ଏକଥା ଏକାଧିକ ତପସ୍ୱୀଙ୍କ ଜୀବନଚରିତରେ ଦେଖିବାକୁ ମିଳୁଛି । ତୁମ ମନ

ମଧ୍ୟ ସମସ୍ତେ ସମସ୍ତେ ଅସ୍ଥିର ହୋଇଯାଉଛନ୍ତି । ନିନ୍ଦା-ପ୍ରଶଂସା, ସତ୍ୟ-ମିଥ୍ୟା, ଆଲୋକ-ଅନ୍ଧକାର— ଏସବୁ ପରସ୍ପର ସଂପୃକ୍ତ ଜଡ଼ିତ । ଏଣୁ କାହାରି ନିନ୍ଦା-ପ୍ରଶଂସାର କଥା ନେଇ ଶୋଚନା କରିବସିଲେ, ମନୁଷ୍ୟ କୌଣସି କାର୍ଯ୍ୟ କରିପାରିବ ନାହିଁ । ଆଉ ଗୋଟିଏ କଥା, ଜଣେ ଯଦି ସାହସପୂର୍ବକ ଏହି ପରିବାର ଭିତରେ କିଛି ଗୋଟାଏ ଅସାମାନ୍ୟ କାର୍ଯ୍ୟ କରେ, ସେ ବ୍ୟକ୍ତି ନାରୀ ହେଉ କି ପୁରୁଷ ହେଉ, ଅନ୍ୟମାନେ ସେ କାର୍ଯ୍ୟର ଅନୁକରଣ କରି ନ ପାରିଲେ, ତା'ର ଅର୍ଥାତ୍ ନଗାନ ପଥର ସାଥୀ ବା ସାଥୀର ଚରିତ୍ରରେ ଦୋଷ ଅନୁସନ୍ଧାନ କରିବାରେ ଲାଗିପଡ଼ନ୍ତି । ମହାଭାରତରେ ତୁମେ ତ ପଢ଼ିଛ, ଶିଶୁପାଳ ପରି କେତେକ ବ୍ୟକ୍ତି ଭଗବାନ କୃଷ୍ଣଙ୍କର ମଧ୍ୟ କୁତ୍ସା ରଟନା କରିବାକୁ ଛାଡ଼ି ନ ଥିଲେ । ମହାକବି ଏ କଥା ଦର୍ଶାଇ ନ ଥିଲେ ତାଙ୍କର ମହାଭାରତ କାବ୍ୟ ଅସମ୍ପୂର୍ଣ୍ଣ ହୋଇଥାନ୍ତା । ଭଗବାନ୍ କୃଷ୍ଣଙ୍କୁ ମଧ୍ୟ କବି ମନୁଷ୍ୟ ଆକାରରେ ପ୍ରକାଶ କରିଦେଇଛନ୍ତି । ଏଥିରୁ ଜାଣିବାକୁ ହେବ— ମନୁଷ୍ୟ ହିଁ ଈଶ୍ୱର, ପୁଣି ଈଶ୍ୱର ହିଁ ମନୁଷ୍ୟ । ଦୋଷଗୁଣରେ ମନୁଷ୍ୟର ମନ, ପ୍ରାଣ ଏବଂ ଶରୀର ମଧ୍ୟ ଗଠିତ । କବି ମନୁଷ୍ୟକୁ ଈଶ୍ୱର କରିବାକୁ ଗୀତା ଛଳରେ ନିର୍ଦ୍ଦେଶ ଦେଇଥାନ୍ତି । କିନ୍ତୁ 'ଅତି ସର୍ବତ୍ର ଗର୍ହିତ' କଥାଟି ମଧ୍ୟ ରହିଛି ତା' ପାଖରୁ । ତୁମଠାରୁ ଲେଖିବସିଲେ, ମୋର କଲମଟିରୁ ଝରିପଡ଼ୁଛି ବାଧା ନ ମାନି । ଏଥର ଏ ଚିଠି ଶେଷ କରିବି । ତୁମେ ସମ୍ପୂର୍ଣ୍ଣ ଏକାଗ୍ର ଚିତ୍ତରେ ଧ୍ୟାନ କରି ଜ୍ଞାନଦେବତାଙ୍କୁ ଡାକ । ଅନ୍ଧ ମନୁଷ୍ୟ ତାଙ୍କୁ ଡକାଇ ଦେଇ ଆସକ୍ତ ହୁଏ ଆପଣା ସ୍ୱାର୍ଥ । କର୍ତ୍ତବ୍ୟ ସମ୍ପାଦନ କରୁଛି ବୋଲି ଅନ୍ୟମାନଙ୍କ ଆଗରେ କହେ । ତାର ସ୍ୱାର୍ଥ-କେନ୍ଦ୍ରିକ ଆଜି ସ୍ୱାର୍ଥର କେତୋଟି ମନୁଷ୍ୟ ବିଶ୍ୱବ୍ରହ୍ମାଣ୍ଡ ବୋଲି ମନେ ହୁଏ । ଏ କଥା ଲେଖିବା ଅବଶ୍ୟ ନିଷ୍ଠୁରତା । କିନ୍ତୁ ଏସବୁ ଲେଖିବାକୁ ମୁଁ ଭିତରୁ ପ୍ରେରଣା ପାଉଛି । ଚିନ୍ତା କରି ଲେଖୁଛି । କାହିଁକି ଲେଖୁଛି ଜାଣ ! କେଉଁଦିନ ତୁମେ ଖାତାପତ୍ର ରଖିଦେଇ ସ୍ୱାର୍ଥସେବାରେ ଲାଗିଯିବ ବୋଲି ମୋର ଭୟ ହେଉଛି । ଏଇ ଗତାନୁଗତିକ କାର୍ଯ୍ୟଟି ବଡ଼ ଆତ୍ମଘାତକ । ଆଉ ଗୋଟାଏ କଥା, 'ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ ।' କଥା ପଢ଼ିଛ, ଏହାର ଉତ୍ତର ମୋ ପାଖରୁ ଯଦି ଜାଣିବ, ଜାଣିବ ଯେ ବର୍ତ୍ତମାନ ତୁମେ ଯେଉଁ କର୍ମ ଆରମ୍ଭ କରିଛ, ତାହା ହିଁ ତୁମର ଧର୍ମ ! ଯକ୍ଷ-ପ୍ରଶ୍ନର ଉତ୍ତରଟା ସ୍ମରଣ କର; ଧର୍ମର ତତ୍ତ୍ୱ ହୃଦୟ-ଗୁହାଭିତରେ ଅଛି ବୋଲି ଯୁଧିଷ୍ଠିର କହିଥିଲେ । ସାମାଜିକ ଭାବରେ ସମସ୍ତେ ଗୋଟାଏ ନିୟମରେ ଚାଲୁଥିଲେ ମଧ୍ୟ ଅର୍ଥାତ୍ ସାମାଜିକ ପ୍ରଥା ଅନୁଯାୟୀ ସମାଜର ସ୍ତ୍ରୀ-ପୁରୁଷ ନିଜ ନିଜ ଜୀବନଯାତ୍ରା ନିର୍ବାହ କରୁଥିଲେ ମଧ୍ୟ ପ୍ରତ୍ୟେକର ଚିନ୍ତାଧାରା ସ୍ୱତନ୍ତ୍ର । ଯେଉଁମାନେ କେବଳ ସେହି ଗତାନୁଗତିକ ପଥରେ ପାଦ ପକାଇ ସ୍ଥୂଳ ସ୍ଥୂଳ ଜୀବନର ସମସ୍ତ ସମୟ ବ୍ୟୟ କରିଦିଅନ୍ତି, ସେମାନଙ୍କ ବିଷୟ ନେଇ ଭାବିବାକୁ କିଛି ନ ଥାଏ; କିନ୍ତୁ ଯେଉଁମାନେ ଆପଣା ଆତ୍ମାକୁ ପ୍ରତ୍ୟକ୍ଷଭାବରେ ଦେଖିପାରନ୍ତି, ସେମାନେ ହିଁ ଆପଣା ଭିତରେ ଅନ୍ତର୍ଯ୍ୟାମୀଙ୍କୁ କରନ୍ତି ଆବିଷ୍କାର । ଏଠି ଅଚ୍ୟୁତାନନ୍ଦଙ୍କ ଚଉତିଶାରୁ ପଦେ ମନେ ପଡ଼ୁଛି, "ମନ ତୋହର ଚତୁର୍ଦ୍ଧା ମୁରଲରେ ମୁଦ୍ରମଣ ।" ଆପଣାକୁ ସୋଽହଂ ରୂପେ କବି ଦେଖିଛନ୍ତି । ଏଇ ସୋଽହଂ ଚିନ୍ତାଟି ପୁଣି ମନୁଷ୍ୟ ପ୍ରାଣରେ ସଞ୍ଚାର କରିଦେଉଛି, ସମଗ୍ର ଜଗତର ବିରହବେଦନା । ଅଦୃଶ୍ୟ ଈଶ୍ୱରଙ୍କ ବିରହରେ କାତର ହୋଇ ମୀରାବାଈ ଡାକି ଉଠିଲେ, "ମୋର ଗିରିଧର ଗୋପାଳ ।" ପ୍ରେମମୟୀ ମୀରାଙ୍କ କଣ୍ଠରୁ ସ୍ୱର ସ୍ୱର ହୋଇ ଝରିପଡ଼ିଲା ସ୍ୱର୍ଗର ସଙ୍ଗୀତ, ନିର୍ବାସିତା ଜନନୀର ସନ୍ତାନ ଧ୍ରୁବ ବିମାତାର ବାକ୍ୟବାଣରେ ବ୍ୟଥାହତ ହୋଇ ଭଗବାନଙ୍କୁ ଆବିଷ୍କାର କଲା ଆପଣା ଭିତରେ । ଧ୍ରୁବର ମରଣଶୀଳ ମାଟିରେ ମିଶିଗଲାଣି କେଉଁକାଳରୁ; କିନ୍ତୁ ତାର ଜ୍ୟୋତି ସୃଷ୍ଟିକରିଛି ଅନ୍ୟ ଗୋଟାଏ ଜଗତ । ସେଇ ଜ୍ୟୋତି ଆଡ଼କୁ ମାନବସମାଜ ଆଖି ମୁଦି ହାତଯୋଡ଼ି ଦେଉଛନ୍ତି । ଦୁର୍ବଳ ବ୍ୟକ୍ତି ହିଁ ତୁମ ପରି ଚିନ୍ତା କରିବସନ୍ତି । କୌଣସି ଜଣେ ପୁରୁଷ "ଭଗବାନଙ୍କ

ଭକ୍ଷଣଂ ସ୍ପର୍ଶଂ ମରଣଂ ସ୍ନାନ ଲେପନଂ” ବୋଲି ଲେଖିଦେଲେ । ତାହା ବୋଲି ପୁରୁଷ ବ୍ୟକ୍ତି କଅଣ ପାକକାର୍ଯ୍ୟ ଛାଡ଼ିଦେବେ ? ଅବଶ୍ୟ ଆଜ ସ୍ତ୍ରୀଗଣ୍ଡୁ ହୋଟେଲମାନଙ୍କରେ ଚଉକିରେ ବସି ଟେବୁଲ ଉପରେ ଖାଦ୍ୟରଖି ଖାଇଲେଣି, ତେଣୁ ସ୍ନାନ ଲେପନର କଥା ଆଉ ନାହିଁ; କିନ୍ତୁ ସହରମାନଙ୍କରେ ଯେଉଁ ହୋଟେଲ, ଯେଉଁ ମିଠେଇ ଦୋକାନ ଅଛି, ସେଗୁଡ଼ିକରେ ବିକ୍ରୀ ହେଉଥିବା ଖାଦ୍ୟ ପୁରୁଷଲୋକ ହିଁ ପ୍ରସ୍ତୁତ କରୁଛନ୍ତି । ନାରୀ ହୋଇ ଜନ୍ମହେଇଛି ବୋଲି ଚିରକାଳ ହାଣ୍ଡିଚୁଲି ଧରି ବସିଥିବ, ଏ କଥା କୌଣସି ଶାସ୍ତ୍ରରେ ଲେଖାହୋଇଛି ବୋଲି ଧାରଣା କରିପାରୁନାହିଁ । ତାହା ହିଁ ଯଦି ତୁମର ବିଶ୍ୱାସ, ସେ ଭାବନାକୁ ବଦଳାଇଦେବା ଆବଶ୍ୟକ । ସମାଜର ରୂପରେଖା ପ୍ରତିଦିନ ପରିବର୍ତ୍ତିତ ହେଉଛି । *ତାହା ମଧ୍ୟ ଧୀରେ ଧୀରେ ବଦଳୁନାହିଁ । ପରିବର୍ତ୍ତିତ* ହେଉଛି ଦ୍ରୁତବେଗରେ । ତୁମ ପାଖରେ ସେହି ପରିବର୍ତ୍ତିନଟି ରୂପ ଧରି ଆଉ ଟିକିଏ ଆଗକୁ ଉଠିଆସିପାରିଛି । ତୁମେ ତାକୁ ଅଭ୍ୟର୍ଥନା କର ନିଜ ଅନ୍ତରର ସମସ୍ତ ଭକ୍ତି ଦେଇ ! ଲେଖିବାକୁ ଅନେକ ବିଷୟ ରହିଛି । ରାମାୟଣ ଏବଂ ମହାଭାରତ ବିଷୟରେ ଲେଖିବାକୁ ଭାବୁଥିଲି; କିନ୍ତୁ ଦେଖୁଛି, ଚିଠି ବଡ଼ ଆକାର ହେଲାଣି । ଆଉ ଥରେ ଲେଖିବା ସମୟରେ ସେ କଥା ଲେଖିବି । ଆଉ ପଦେ କଥା କହି ଚିଠି ଶେଷକରୁଛି । ତୁମେ ଭୁଲିଯାଅ ସେ ତୁମେ ଜଣେ ସାମାନ୍ୟ ସ୍ତ୍ରୀ ବ୍ୟକ୍ତି । ଭୁଲିଯାଅ, ତୁମେ ଜଣେ ସାମାନ୍ୟ ନିମ୍ନ-ମଧ୍ୟବିତ୍ତ ଘରର ଘରଣୀ । ତୁମେ ଜଣେ ମନୁଷ୍ୟ ବୋଲି ଧାରଣାକରି ଯେଉଁ କାର୍ଯ୍ୟ ଆରମ୍ଭ କରିଛ, ତାକୁ ହିଁ ଏକାନ୍ତ ଏବଂ ଏକାଗ୍ର ଚିତ୍ତରେ ସମ୍ପୂର୍ଣ୍ଣ କର । ତେବେ ଯାଇ ପହଞ୍ଚିବ ସ୍ୱର୍ଗରାଜ୍ୟରେ । ସାମାନ୍ୟ କେତୋଟି ସୋପାନ ମାତ୍ର ଅତିକ୍ରମ କରିଯାଇଛ, ଧ୍ରୁବତାରା ଆଡ଼କୁ ଅନେଇ ଗତିକର । କର୍ମ ହିଁ ତୁମର ଧର୍ମ ହେଉ । ଧର୍ମବିଶ୍ୱାସଟି ଯେ ହୃଦୟର ସମ୍ବଳ; ଏ କଥା ତୁମେ ବୁଝୁଛ କିନ୍ତୁ ସ୍ପଷ୍ଟ କରି କହିପାରୁ ନାହିଁ । ତୁମର ଏ ଚିନ୍ତା ଆହୁରି ସ୍ପଷ୍ଟ, ଆହୁରି ସୁନ୍ଦର ହେଉ । ତୁମର ଜୀବପ୍ରାଣ ଉଦ୍‌ବୁଦ୍ଧ ହୋଇଉଠୁ ।

ପରମାନନ୍ଦ କହିଲେ, କେଡ଼େ ବଡ଼ ଚିଠି ଲେଖିଛି ତୁମ ପୁଅ ! ଶୁକ ତାର ନାମଟିକୁ ସାର୍ଥକ କରି ତୁମରି ଗୁରୁ ହେବାକୁ ଯୋଗ୍ୟତା ଅର୍ଜିଲାଣି । ଜବ-ମାଆର ଦାର୍ଶନିକ ପୁଅ । ଇମିତି ପତ୍ନୀର ପତି ଆଉ ଇମିତି ପୁତ୍ରର ପିତା ମୁଁ । ଯଦି କେବେ ଜୀବନୀ ଲେଖିବ, ତୁମେ ମୋ କଥା ଲେଖିବ ପ୍ରଥମେ ।

ସ୍ୱର୍ଣ୍ଣ ସ୍ୱାମୀଙ୍କ ପାଦ ଉପରେ ମଥା ରଖିଦେଇ କହିଲା, ତୁମରି ଆଶୀର୍ବାଦରେ ଏ ସମ୍ପଦ ପାଇଛି ପ୍ରିୟତମ ! ଶ୍ୱଶୁରଙ୍କର ଉଦ୍ୟାବାଦକୁ ତୁମେ ମୋ ଅନ୍ତରରେ ଜୀବନ୍ତ, ଜାଗ୍ରତ କରାଇ କହିଛ ସାଫଲ୍ୟମଣ୍ଡିତ । ଶ୍ୱଶୁରଙ୍କ ସହିତ ସେଇ ପ୍ରଥମ ସାକ୍ଷାତର କଥା ଭୁଲିବାର ନୁହେଁ । ସେ ଦିନର ମୁହୂର୍ତ୍ତ ନିତି-ପ୍ରତିକ୍ଷଣରେ ଦେଖାଦେଉଛି ଶତସହସ୍ର ରୂପରେ । ସୃଷ୍ଟି ଆରମ୍ଭରେ ବସୁନ୍ଧରାର ବକ୍ଷରୁ ଯେଉଁ ଧ୍ୱନି ଉଠିଥିଲା, ସେ ଧ୍ୱନି ଆଜି ବାଜଉଠିଛି ମୋର ଏ ଦୁର୍ବଳ ମର୍ମରେ ।

ପରମାନନ୍ଦ ସ୍ୱର୍ଣ୍ଣର ପିଠିରେ; ମଥାରେ ହାତ ବୁଲେଇ ଆଣି କହିଲେ, ଏଇ ଅନୁଭୂତିଟିକକ ଜୀବନ ସମ୍ବଳ ଶୁଣୁହୋଉ ! ସେ ଆଉ କଅଣ ଗୋଟାଏ କହିବାକୁ ଯାଉଥିଲେ, ବିଶୁ ବାଣ୍ଡ୍ରିଆଡ଼ୁ ଆସି କହିଲା, ସାର ଡାକ୍ତର ଆସିଛି । ତାକୁ କ ଔଷଧ ଦେବାକୁ କହିଥିଲେ ପରା ?

× × × ×

ସେ ଦିନର ସକାଳବେଳାର ଚିଠି ପଢ଼ା, ପୁଣି ସ୍ୱର୍ଣ୍ଣ ଏବଂ ପରମାନନ୍ଦଙ୍କ ଭିତରେ ସେ କଥା ନେଇ ଆଲୋଚନା—ଏସବୁ ପରେ ପ୍ରାୟ ସପ୍ତାହ ଗୋଟାଏ ଅଖାର ଗର୍ଭରେ ଲୀନ ହୋଇଗଲାଣି ।

ଇତିମଧ୍ୟରେ, ନାଟକଘରର ଅଧିକାଂଶ କାମ ହୋଇ ଯାଇଥିଲା । ବାକି ଥିଲା, ଛବିଗୁଡ଼ିକ ସଂଯୋଗ କରିବା । ସ୍ୱର୍ଣ୍ଣ ଶୁକର ଚିଠି ପାଇବା ପରେ ଅତ୍ୟନ୍ତ ଉତ୍ସାହର ସହିତ ‘ଧ୍ରୁବ ତପସ୍ୟା’ ଶେଷ କରି

ଶୁଣୁଥିଲା । ସୂତ୍ରଧାର ଏବଂ ବାଦ୍ୟକାର ଆସିବା ପୂର୍ବରୁ ସେ ଯିମିତ ଇଚ୍ଛା ଅନୁସାରୀ ଲେଖିଯାଉଥିଲା, ସେ ଅବସ୍ଥା ଆଉ ନ ଥିଲା । ପ୍ରତ୍ୟେକ ସଂଳାପଟି ଲିପିବଦ୍ଧ କରିବା ସମୟରେ ତାକୁ ଟିକିଏ ଚିନ୍ତା କରିବାକୁ ପଡୁଥିଲା । ନାଟକୀୟ ଚରିତ୍ରଗୁଡ଼ିକର ସ୍ୱଭାବ, ଚରିତ୍ର, ବୟସ, ଶିକ୍ଷାଦୀକ୍ଷା ଇତ୍ୟାଦି ବିଷୟ ଆଡ଼କୁ ଦୃଷ୍ଟିରଖି ସେମାନଙ୍କ ମୁହଁରେ କଥାଦେବାକୁ ହେଉଥିଲା ତାକୁ ।

ସନ୍ଧ୍ୟାପୂର୍ବରୁ ସ୍ୱର୍ଣ୍ଣ ନାରଘାଖ ବାରଣ୍ଡାରେ ବସି ଚିନ୍ତା କରୁଥିଲା, ନାଟକର ଶେଷଟାକୁ କିମିତି ଚିତ୍ତାକର୍ଷକ କରିବ ବୋଲି । ଲେଖୁ ଲେଖୁ ଖାଲୁ ଖାଲୁ ମନେପଡ଼ିଯାଉଛି, ନାଟକ ହେବା ଦିନ ପାଖ ହୋଇଆସୁଛି । ତା' ହାତରେ ଥିବା ସବୁ ଟଙ୍କା ଖରଚ ହୋଇଗଲାଣି । ବାଦ୍ୟକାରେ କହିଦେଇ ଯାଇଛନ୍ତି—ଆଉ ଘଣ୍ଟେ ଦୁଇଘଂ' ଲାଗିଯିବ ନାଟକ ଆରମ୍ଭ ଦିନ; କିନ୍ତୁ ଏ ସମସ୍ତ ଚିନ୍ତା କଲେ ତ ତା'ର କଲମ ଅଚଳ ହେଉଛି । ସୁଦୂରରୁ ଶୁଣି ଲେଖୁଛି, ଏକାଗ୍ର ଭାବରେ ଲେଖିଯିବାକୁ । ଏଣେ ସ୍ୱାମୀ କହୁଛନ୍ତି, ସମସ୍ତ ପ୍ରକାର ଭାବନା ସଂସାରଜଞ୍ଜାଳକୁ ଦୂରରେ ରଖିଦେଇ କେବଳ ଲେଖି ଯିବାକୁ ହେବ । ସୁରମାଷ୍ଟ୍ରେ କହୁଛନ୍ତି, 'କସ୍ତୁରି' ନାଟକ ଅଭିନୀତ ହେବା ସଙ୍ଗେ ସଙ୍ଗେ 'ଧ୍ରୁବ'କୁ ମଞ୍ଚସ୍ଥ କରାଇଦେବେ । ତା' ପରେ ପରେ ଅନ୍ୟ ନାଟକଗୁଡ଼ିକ ମଧ୍ୟ ହୋଇଯିବ । ଅଭିନୟ ଦେଖିବାକୁ ତା'ର ପଡ଼ା କେତେ ଘରର ଘରଣୀ ଆସିବେ । ଦେଖି ଦେଖି ଶୁଣି ଶୁଣି ସେମାନଙ୍କର ମଧ୍ୟ ଶାନ୍ତିପଡ଼ି ହୋଇଉଠିବ ଜୀବନ । ଜ୍ଞାନଦେବତାଙ୍କୁ ଖୋଜି ହେବେ ମନେମନେ ।

ଏତିକିବେଳେ ଅଗଣାଆଡ଼ୁ ବସୁ ହୋ ବୋଲି ଡାକ ଡାକ ପ୍ରବେଶ କଲେ ସୁରମାଷ୍ଟ୍ରେ ଆଉ ବାଦ୍ୟକାରେ । ସ୍ୱର୍ଣ୍ଣ ଗୀତ ଗୋଟିଏ ଲେଖୁଥିଲା, ଶେଷ ପଦଟି କିଛି ବାକି ଥିଲା ସେଥିର । ଏ ସମୟକୁ ବସୁ ଆସୁଥିଲା ଗୁହାଳଘରଆଡ଼ୁ । ସ୍ୱର୍ଣ୍ଣ କହିଲା ସୁରମାଷ୍ଟ୍ରେ ହେଇ ଆସି ଗଲେଣି, ବସିବାକୁ କହିଦେ ଅନ୍ଧାର ମଧ୍ୟ ହୋଇ ଆସିଲାଣି, ଲଣ୍ଠନ ଜାଳି ରଖିଦେ, ମୁଁ ଏଇକ୍ଷଣି ଆସୁଛି ।

ବସୁ ଲଣ୍ଠନ ଜାଳିଆଣି ରଖିଦେଲା ବସିଘରର ବାରଣ୍ଡାରେ । ବାଦ୍ୟକାର ଆଉ ସୁରମାଷ୍ଟରଙ୍କର ଉତ୍ସାହ ବଢ଼ିଗଲା, ବସୁକୁ ଏକାନ୍ତରେ ଆଉ ନିକଟରେ ପାଇ । ଗୀତ ଗାଇବାକୁ ଅନୁରୋଧ କରୁଥିଲା ବସୁ । ସ୍ୱର୍ଣ୍ଣ ଖାତା କେତେଟା ଧରି ଯାଇ ତାଙ୍କରେ ବସୁ ବସୁ କହିଲା, ଆପଣମାନଙ୍କର ଆସିବା ସମୟକୁ କି ମୁଁ ଏ ଗୀତଟାକୁ ଲେଖୁଥିଲି । କିଅଣ ହୋଇଛି ଦେଖିବେ ?

ସୁରମାଷ୍ଟ୍ରେ ବସୁ ଆଡ଼କୁ ଅନେଇଁ କହିଲେ, ନୂଆ ଗୀତ ଗାଇବାକୁ କହୁଥିଲି ସୁଯୋଗରେ ! ଗୀତଟାକୁ ଦେଖୁ ଦେଖୁ ସ୍ୱ' ଧରି ପକେଇ ଆସନ୍ତି ! ଦେଖିବ କିମିତି ଗୀତ ତାଳ ଧରି ଉପରକୁ ଉଠିବ । ଚୁଲିରେ ପାଣି ବସିଥିବ ତ ନିଶ୍ଚୟ । ଏଣେ ସ୍ୱର୍ଣ୍ଣ ହାତରୁ ଖାତା ନେଇ ଦେଖିଯାଉଥିଲେ ସେ କହିବା ସମୟରେ ।

ବାଦ୍ୟକାର କହିଲେ, ଗୀତଟାକୁ ଆରମ୍ଭ କର ମାଷ୍ଟ୍ରେ । ନୂଆ ହେଉ କି ପୁରୁଣା ହେଉ, ସ୍ୱର ଗୋଟାଏ ଯୋଡ଼ିଦିଅ । ପରେ ସମସ୍ତ ଦେଖି ଭଲ-ସ୍ୱର ଗୋଟାଏ ଦେଇଦେବ । ଆଲୋଚନା ଚାଲିଥିଲା, ବସୁ ସ୍ୱ' ଧରି ଆସି କହିଲା, ଘାଷ୍ଟକଲସ ସ୍ୱ' ଆଣିଛି ମାଷ୍ଟ୍ରେ ! ଏଥର ଗୀତ କୋଳି ।

ସୁରମାଷ୍ଟ୍ରେ ସ୍ୱ' କପଟାକୁ ତଳେ ରଖିଦେଇ କହିଲେ, ଭଲ ଗୀତଟିଏ ହୋଇଛି ତ ବାଦ୍ୟକାରେ ! ହାରମୋନିୟମ୍‌ଟା ଏଆଡ଼କୁ ରଖିଦିଅଟି ବସୁ ! ତବଲା ଡୁଗି କେଉଁଠି ଲୁଚିବା କଥା ଲୁଚିବଣି । ସୁରମାଷ୍ଟ୍ରେ ହାରମୋନିୟମ୍‌ଟାକୁ ଟିପୁ ଟିପୁ କହିଲେ, ସୁନ୍ଦର ଗୀତଟିଏ ହୋଇଛି ତ ଆଜି । ସ୍ୱାମୀକୁ କହିଲ ଆଉ ଗୋଟିଏ ନୂଆ ନାଟକରେ ସଂଯୋଗ କରିଥାନ୍ତୁ ନା ଏଇ 'ଧ୍ରୁବ' ଭିତରେ ରଖିବେ ? ବାଦ୍ୟକାରଙ୍କୁ ତବଲା ବଜେଇବା ଆରମ୍ଭ କର କହିଲେ, ଆଗ ଗୀତଟାକୁ ବୋଲ ମାଷ୍ଟ୍ରେ, କାନକୁ କିମିତି ଲାଗୁଛି ଦେଖିବା ।

ସୁରମାଷ୍ଟ୍ରେ କୃତ୍ରିମ ବିରକ୍ତିରେ କହିଲେ, ଗୀତଟିକୁ ଗାଇବା ପର୍ଯ୍ୟନ୍ତ ତୁମେ ମତେ ରଖେଇ ବସେଇ ଦେବନାହିଁ । ଶୁଣ ତାହାହେଲେ—

ପରମବନ୍ଧୁ ଅଛନ୍ତି ଆସି
 ବସି ଅଛନ୍ତି ପାର୍ଶ୍ୱେ
ଶିହରି ଉଠେ ସକଳ ଅଙ୍ଗ
 ତାଙ୍କରି କର ସ୍ପର୍ଶେ । ୧ ।
ଅଜ୍ଞାତ ଶବ୍ଦେ ଡାକୁଛି କେତେ
ଦର୍ଶନ ଦେଇ ନ ଥିଲେ ମତେ
ଗୋଟିଏ ଥର ଡ଼ାକୁଛି ଆଜ
 ଆସିଲେ ଭାବାବେଶେ । ୨ ।
ଦୁଃଖ ଯେତେକ ଅଛି, ମନରେ
କହିବି ସବୁ ସନ୍ନିଧାନରେ
ରଖିବି ନାହିଁ ପଦେ ହେଁ କଥା
 ଆଜ ମୁଁ ଅପ୍ରକାଶେ । ୩ ।
ଆନନ୍ଦମୟ ଆସିଛି ଆଜ
ହୃଦୟ ବୀଣା ଉଠୁଛି ବାଜ
ଉଚ୍ଛ୍ୱସି ଉଠେ ଭାବନାରାଶି
 ମୋର ଏ କଣ୍ଠ-ଦେଶେ । ୪ ।

ଗୀତଟା ଗାଇବା ଶେଷ କରୁ କରୁ ସୁରମାଷ୍ଟ୍ରେ କହିଲେ, ଏଇ ପାଖକୁ ଆଉରି ଗୋଟିଏ ଗୀତ ଅଛି ବାଦ୍ୟକାରେ । ଏ ଗୀତର ସ୍ୱରଟା ଇମିତି ହେବ ଶୁଣ—

ସମ୍ମୁଖରେ ବସିଛନ୍ତି ପରାଣ ପ୍ରିୟ,
ନିଖିଳ ଜଗତ ଦିଶେ ଆନନ୍ଦମୟ,
ଅପଲକ ନୟନରେ ରହିଛି ଚାହିଁ
ଆନଚିନ୍ତା ମାନସରେ ତିଳେ ହେଁ ନାହିଁ
ସ୍ୱରଗ ସମାନ ଦିଶେ ମର୍ତ୍ତ୍ୟ ଆଳୟ । ୧ ।
ମହାରାଜ ତୁମେ ମୋର ମୁଁ ଧନହୀନ
ଅଷ୍ଟ ଅଇଶ୍ୱର୍ଯ୍ୟ ମତେ କରିଛ ଦାନ
ଦେଇଛ ଅସୀମ ଭକ୍ତି ଦେଇଛ ସ୍ନେହ । ୨ ।
ପ୍ରିୟତମ ବସିଅଛ ସମ୍ମୁଖେ ଆଜ ।
ଅନ୍ତର ମନ୍ଦିରେ ଶଙ୍ଖ ଉଠୁଛି ବାଜ ।
ସେ ଧ୍ୱନିରେ ଦୋହଲି ମୋ ଉଠେ ହୃଦୟ ।୩।
ପ୍ରଭୁଙ୍କ ଗଳାରେ ଅଛି ସ୍ୱର୍ଗ ସୁମନ
ସେ ସୌରଭେ ଭରିଯାଏ ମୋର ଭୁବନ,
ଭୁଲିଯାଇଅଛି ଆଜି ସଂସାର ଭୟ । ୪ ।
ଯେତେ ଦୁଃଖ-ସୁଖ ଥିଲା ଗୋପନ ମନେ
ତୁମକୁ କହିଛି ପ୍ରଭୁ ମୋର ସ୍ୱପନେ,
କହିବି ଆଜି ପ୍ରତ୍ୟକ୍ଷେ ଆଦେଶ ଦିଅ । ୫ ।

ତବଲଟାକୁ ଟିକିଏ ଠେଲି ଦେଇ ବାଦ୍ୟକାରେ କହିଲେ, ପ୍ରତ୍ୟେକ ବାକ୍ୟଟି ଯେ ନୈବେଦ୍ୟରୂପେ ଭଗବାନଙ୍କ ପାଦତଳେ ଅର୍ପଣ କରାଯାଇଛି ମାଷ୍ଟ୍ରେ ! ପ୍ରଭୁଙ୍କର ମାଆଙ୍କ ପ୍ରତି ବଡ଼ ଦୟା । ଦେଖୁନ, ଏ ଅକ୍ଷର ସ୍ରୋତ ବାଧାପ୍ରାପ୍ତ ନ ହୋଇ ଗଙ୍ଗାଧାରା ପରି କଳ କଳ ଧ୍ୱନି କରି ଗଡ଼ି ଚାଲୁଛି ।

ସୁରମାଷ୍ଟ୍ରେ ଖାତା ଦେଖି ପଢ଼ୁ ପଢ଼ୁ କହିଲେ, ଅକର୍ମୀର କର୍ମ ହେଉଛି ଦୋଷ ବାଛିବା । ତେବେ ମଧ୍ୟ ସମୟେ ସମୟେ ମୋର ମନେ ହେଉଛି, ଏଗୁଡ଼ିକ ଅନ୍ତର୍ଯ୍ୟାମୀଙ୍କ ଅର୍ଘ୍ୟଥାଳିର ଗୋଟିଏ ଗୋଟିଏ ସୁଗନ୍ଧି ଫୁଲ । ଆମେ ଯିବା ବାଦ୍ୟକାରେ, ଏଗୁଡ଼ିକୁ ଏତେ ଭଲପାଉଛେ ! ଆମର କଥାକୁ ଲୋକଙ୍କ ସମ୍ମୁଖୀନ କରାଇବାକୁ ଯେତେବେଳେ ଯାଉଛେ, ସେମାନଙ୍କଦ୍ୱାରା କିମିତି ଆଦରଣୀୟ ହେବ, ସେଇ ଚିନ୍ତା ହିଁ କରିବାକୁ ହେଉଛି ବର୍ତ୍ତମାନ ।

ଇତିମଧ୍ୟରେ ବଶୁ ଚାଲିଯାଇଲା ଦାଣ୍ଡ ଆଡ଼କୁ । ସେଆଡ଼ୁ ଆସି କହିଲା, ଧନୁ ଦରଜିକୁ କଅଣ ସିଲେଇ କରିବାକୁ ଦେଇଥିଲେ କି ମାଷ୍ଟ୍ରେ ? ଏବେ ସେ ଆସି ପିଣ୍ଡାରେ ବସିଛି, କଅଣ ପଦେ କହିବ ବୋଲି ।

ସୁରମାଷ୍ଟ୍ରେ ଯିବା ଉଦ୍ୟମରେ ରହି କହିଲେ, ଆଉ ତିନଟା ଦିନ ରହିଲା ନାଟକ ହେବାକୁ । କାମ ତ ଆହୁରି ଅନେକ ବାକିଛି ବାଦ୍ୟକାରେ ! ଧନୁ ସ୍କ୍ରିନ ସିଲେଇ କରିବାକୁ ଦେଇଥିଲି । ପଇସା ମାଗି ଆସିଥିବ । କାଲି କି ଷ୍ଟେଜ୍ ରିହାର୍ସିଲ ଗୋଟାଏ କରିଦେବା ବୋଲି ଭାବୁଛି । ଇମିତି ଅନେକ ବିଷୟ ଚିନ୍ତା କରିବାକୁ ରହିଛି ।

ବାଦ୍ୟକାରେ କହିଲେ, ସ୍କୁଲ ଖୋଲିବେ ମାଷ୍ଟ୍ରେ, ଯିମିତି ଅନାହୂତ ଭାବରେ ଆସିଥିଲେ, ଯିମିତି ପୁଣି କେଉଁବେଳେ ଚାଲିଯିବା । ଯିବା ପୂର୍ବରୁ ମୋ ମା ଆଲକ୍ଷ୍ମୀଙ୍କର ଲେଖାଗୁଡ଼ିକ କମିତି ଅଭିନୀତ ହୋଇଯିବ । ତାଙ୍କର ସାହିତ୍ୟିକ ପ୍ରତିଭା ଲୋକେ ଅନୁଭବ କରିବେ । ସେଇ କଥାଟି କାନରେ ଶୁଣି, ଆଖିରେ ଦେଖି, ଏକାଥରକେ ଦୂରକୁ ପଳେଇଯିବା । ଆଉ ଗୋଟାଏ କଥା ମନେ ପଡ଼ିଗଲା । ଆମର ଏଠିର ସାହିତ୍ୟ ସମିତିର ସମ୍ପାଦକ ବଡ଼ ଉତ୍ସାହରେ ଆମ ସାଙ୍ଗରେ ମିଶି ଯାଇଛନ୍ତି । ତାଙ୍କୁ ଦାମ ରଥଙ୍କ ପାର୍ଟଟା ଦେଇଛି । ତାଙ୍କର କଥାରେ, ସ୍କୁଲରେ ବଡ଼ ସୁନ୍ଦର ଗୋଟାଏ ନାଟକୀୟ ଛଟା ଅଛି । ସବୁ ଭଲରେ ଚାଲିଯିବ ବୋଲି ଆଶା କରି ରହିଛେ । କେବଳ ଟଙ୍କାପଇସା ଖରଚ କଥା ଭାବିଲେ, ମନଟା କମିତି ଦୁଃଖିତ ହୋଇ ବସିପଡ଼ୁଛି ।

ସ୍ୱର୍ଣ୍ଣ ଏଇ ଟଙ୍କାପଇସା କଥା ଶୁଣି କହିଲା, ଟଙ୍କା ଖରଚ କରିବା କଥା ତ ଆଗରୁ ସ୍ଥିର ହୋଇସାରିଛି । ସେ କଥା ଆଉ ଭାବିବା ନାହିଁ । ଆପଣ ଏଇ ଯେ ଯିବା କଥା କହିଲେ, ତ ତା ହିଁ ସମସ୍ତେ ସମସ୍ତେ ମନୁଷ୍ୟଙ୍କୁ ଅସ୍ଥିର କରିଦେଉଛି । ମନେହେଉଛି, ଆପଣମାନେ ମୋର ହାତ ଧରି ଲେଖେଇ ଦେଉଛନ୍ତି । ଆପଣମାନେ ଏ ଘରକୁ ନ ଆସିଲେ, ଯେଉଁ ହାତ ଲେଖୁଛି, ସେ ଅଚଳ ହୋଇଯିବ ।

ସୁରମାଷ୍ଟ୍ରେ ଅଗଣାରେ ଠିଆହୋଇ ଅନେଇଁଥିଲେ ଉପରକୁ । ବାଦ୍ୟକାରେ ଆବେଗଜଡ଼ିତ କଣ୍ଠରେ କହିଲେ, ମୋ ମାଆ; ତୁମେ ଆହୁରି ଅଧିକ ଆବେଗରେ ଲେଖିଯାଅ, ଏହା ହିଁ ଆମର କାମନା । ମାତ୍ର ଯେଉଁ ସ୍ରଷ୍ଟା ଆମମାନଙ୍କୁ ଏଠିକି ଆଣିଛି, ତାହାର ଶକ୍ତି ଯଦି ଆମମାନଙ୍କୁ ଟାଣି ନେଇଯାଏ, ସେଥିକି ତ ଆମେ ବାଧାଦେଇ ପାରିବା ନାହିଁ । ମନର କଥାଟା ଆଜି ସ୍ପଷ୍ଟକରି କହିଦେଉଛି, ତୁମର ସବୁଲିଖିତ ନାଟକ ଅଭିନୀତ ହେବାପରେ ହିଁ ଆମେ ଏ ସ୍ଥାନ ଛାଡ଼ିବୁ । ତୁମେ ଆଉ ଦୁଃଖ କରିବନାହିଁ । ସ୍ୱର୍ଣ୍ଣ କିଛି ନ କହି ଛୁଟିଗଲା ଘର ଭିତରକୁ ।

ଏତିକିବେଳେ ସୁରମାଷ୍ଟ୍ରେ ଡାକିଲେ, ଧନ୍ୟ ଦାଦା ଆଉ କେତେ ବସିବ ବାଦ୍ୟକାରେ ! ମୁଁ ଟିକିଏ ଯାଉଛି । ତମେ ପଛରେ ଆସ ।

ସ୍ୱର୍ଣ୍ଣ ଡାଲି ମୁଣିରେ ମୁଣିଏ ହେବ ଟଙ୍କା ଧରି ଆସି ଦେଖିଲା ସୁରମାଷ୍ଟ୍ରେ ନାହାନ୍ତି । କାହିଁକି କେଜାଣି ସେ ବଡ଼ ନିଶ୍ଚିନ୍ତ ବୋଧ କରି ଅଗ୍ରସର ହୋଇଆସିଲା ବାଦ୍ୟକାରଙ୍କ ପାଖକୁ । ଟଙ୍କା ମୁଣିଟାକୁ ସେ ତାଙ୍କ ହାତରେ ରଖିଦେଇ କହିଲା, ଏଇକ୍ଷଣି ଦରକାର ପଇସା ମାଗିବ । ଖାଲି ତ ଦରକାରର କଥା ନୁହେଁ, କଡ଼େଇ ମଧ୍ୟ କାର୍ଯ୍ୟରେ ଲାଗିଛି । ପ୍ରସ୍ତୁତ ରହନ୍ତୁ ! ଦର୍ଶକଙ୍କ ! କେତେ କଷ୍ଟ କରିବାକୁ ଅଛି । ଏଥିରେ ଅନେକ ଟଙ୍କା ଅଛି, ନେଇଯାଇଥାନ୍ତୁ ।

ବାଦ୍ୟକାର ଟିକିଏ ପଛକୁ ଘୁଞ୍ଚିଯାଇ କହିଲେ, ଟଙ୍କା ବୋଲିବା କଥାଟାକୁ ଆମେ ଯେତେ କ୍ଷୁଦ୍ର ବୋଲି କହୁ, ପ୍ରକୃତରେ ସେ କଥା ସିମିତି ନୁହେଁ । ମୋର ଭୟ ହେଉଛି, ଘୋଷେଇଁପୁଅ ଏସବୁ ଜାଣନ୍ତୁରେ—”

ସ୍ୱର୍ଣ୍ଣ ବାଧାଦେଇ କହିଲା, ତାଙ୍କରି ଆଦେଶରେ ତ ମୁଁ ଏ ଦୁର୍ଗମ ପଥରେ ପାଦ ଦେଇଛି ବାଦ୍ୟକାରେ ! ତାଙ୍କରି ଇଚ୍ଛାରେ ହିଁ ମୁଁ ବସୁଛି, ଉଠୁଛି, ଏଥିଲେ ଆପଣ କେବେ ଅନ୍ୟ ଭାବନା କରିବେନାହିଁ । ଅନ୍ୟ କେହି ଜାଣୁ କି ନ ଜାଣୁ, ଆପଣ ତ ମୋର ଜୀବନଇତିହାସ ଜାଣନ୍ତି । ଆପଣଙ୍କ ଘୋଷେଇଁପୁଅ ତାଙ୍କ ଅଭିଭାବକ ମତେ ଆଶ୍ରୟ ଦେଇଛନ୍ତି ବୋଲି ପିଲା ଆଜି ଆପଣଙ୍କୁ ପିତାରୂପେ ପାଇପାରିଛି । କହୁ କହୁ କଣ୍ଠରୋଧ ହୋଇଗଲା ସ୍ୱର୍ଣ୍ଣର । ବାଦ୍ୟକାରେ ସ୍ୱର୍ଣ୍ଣର ମଥାରେ ହାତଦେଇ କହିଲେ, ମାଆଲକ୍ଷ୍ମୀ ମୋ, ତୁମକୁ ବଡ଼ ଗୋଟାଏ ପଦ ଦେଇ ମତେ ଡାକିଦେଲ; ଚିହ୍ନଉ ଦେବେ; ଏ ଜନ୍ମରେ ତ ପିତା ବୋଲି ମନରେ ଭାବିଚିକ ରଖିଛ, ଆଗାମୀ ଜନ୍ମରେ ତୁମେ ହିଁ ମୋର କନ୍ୟାରୂପେ ଜନ୍ମ ହେବ ।

ସୁରମାଷ୍ଟ୍ରେ ଦାଣ୍ଡଆଡ଼ୁ ଫେରିଆସି ବସିପଡ଼ିଲେ ଖମ୍ବ ପାଖକୁ । ବାଦ୍ୟକାରେ ସେଇ ପାଖକୁ ବସିଯାଇ କହିଲେ, ଆଉ ଥରେ ଫେରିଆସିଲ ମାଷ୍ଟ୍ରେ !

ସୁରମାଷ୍ଟ୍ରେ କହିଲେ, ତୁମର କଥା ତ ଶେଷ ହୋଇନାହିଁ, ମୁଁ ମୋର ଆବେଗ ସମ୍ଭାଳି ନ ପାରି ପଦେ କହିଦେବି ବୋଲି ଅସିଲି । ପ୍ରଥମ ଦିନ କମିଟି ଆମେ ଆସିଲେ, ସେ କଥା ମନେ ପଡ଼ୁନାହିଁ । ଆମ-ମାନଙ୍କର ଭାବପ୍ରବଣତା ଆମକୁ ଟାଣିଆଣି ଏଠି ଗୁଡ଼ି-ଦେଇ ସ୍ଥଳଯାଇଛି । ଏ ସ୍ଥାନ ଛାଡ଼ି ଚଳେଇଯିବା କଥା ଭାବିଲେ ହିଁ ଅବସାଦ ଆସି ମନକୁ ଅବସନ୍ନ କରି-ଦେଉଛି । ଯେତେଦିନ ରହିଛେ ଯିବା କଥା ସ୍ମରଣ କରିବାନାହିଁ । ଭବିଷ୍ୟତର କଥା ଭବିଷ୍ୟତକୁ ରଖି-ଦେଇ ମାଆଙ୍କୁ ଆମେ ନିଶ୍ଚିନ୍ତରେ ରହିବାକୁ ଦେବା । ଆମମାନଙ୍କର ଯିବା ରହିବା ଚିନ୍ତା ନ କରି କେବଳ ଲେଖିଯାଆନ୍ତୁ । ଆପଣଙ୍କ ଅନୁମତି ପାଇଲେ ହିଁ ଆମ ଯିବା କଥା ହେବ । ତା'ପରେ ଆମର ନାଟକ ଯଦି ଏଠି ଭଲ ଚଳେ, ଯିବାପାଇଁ କୌଣସି କାରଣ ରହିବନାହିଁ । କଅଣ କହୁଛ ବାଦ୍ୟକାରେ !

ଏ କଥା ଉପରେ କୌଣସି କଥା ନ କହି ବାଦ୍ୟକାରେ ଉଠିଗଲେ ଅଗଣା ଆଡ଼କୁ । ସୁରମାଷ୍ଟ୍ରେ ମଧ୍ୟ ବାଦ୍ୟକାରଙ୍କ ପଛରେ ବାହାରି ପଡ଼ିଲେ ।

ସୁରମାଷ୍ଟ୍ରେ ସେପାଖ ବାରଣ୍ଡା ଆଡ଼ୁ ପଛକୁ ମୁହଁ ଫେରେଇ କହିଲେ, "ବୁଢ଼ଙ୍କ ଗୃହତ୍ୟାଗ" ନାଟକ ଶୀଘ୍ର ତିଆରି କରିଦେବେ ଆଜ୍ଞା ! ମହାପୁରୁଷଙ୍କ ବାଣୀ କାନ ଭିତରେ ଗୁଞ୍ଜରି ଉଠୁଛି । "ବାଲ୍ୟକାଳୁ ଧର୍ମ ଧନ ମୁଁ ସଞ୍ଚିବ ଏ ଜୀବନ ଅନିଶ୍ଚିତ । କେଜାଣି କାହାର ଆଜି ମୃତ୍ୟୁକାଳ ହୋଇଯିବ ଉପସ୍ଥିତ ।" ଆମେ ସବୁ ବୟସରେ ଯିନା ବୃଦ୍ଧ, ହେଲେ ଜ୍ଞାନରେ ଶିଶୁ ହୋଇ ରହିଛେ । ମହାପ୍ରସ୍ଥାନ କରିବା ଆଗରୁ କିଛି ହେଲେ କରିଦେଇ ଯାଇଥିବା ।

ସ୍ୱର୍ଣ୍ଣ ଅଗଣା ଆଡ଼କୁ ଅଗ୍ରସର ହୋଇ କହିଲା, ଆପଣମାନେ ଜାଣନ୍ତି, ମତେ କଥା କହିବା ଆସେ ନାହିଁ । କେତେବେଳେ ଅନ୍ତର୍ଯାମୀ ଦୟା କରି ମୂକକୁ ବାଚାଳ କରି କଥା କୁହାଇବେ —

ସୁରମାଷ୍ଟ୍ରେ ଟିକିଏ ରହିଯାଇ କହିଲେ-ସଂକ୍ଷିପ୍ତରେ ମନୋଭାବ ପ୍ରକାଶ କରିପାରୁଛନ୍ତି ବୋଲି ଆମେ ଆଲୋଚନା କରୁଛୁ । ତେବେ ଜ୍ଞାନପ୍ରାପ୍ତିରେ ଜ୍ଞାନବ୍ୟକ୍ତିର ତୃପ୍ତି ଅଛି କି ଆଜ୍ଞା ? ତାହା ମଧ୍ୟ ଜ୍ଞାନ ପକ୍ଷରେ ଶୁଭ ଲକ୍ଷଣ ।

ସେଦିନ ରାତି ନ ଶୋଇ ସ୍ୱର୍ଣ୍ଣ ଲାଗିଥିଲା 'ବୁଢ଼ଙ୍କ ଗୃହତ୍ୟାଗ' ଲେଖିବାରେ । ମାର୍ଗଶିର ମାସର ହିମାକ୍ତ ସନ୍ଧ୍ୟା । ଘର ଅଗଣା ସବୁଆଡ଼େ ରହିଥିଲା ଅନ୍ଧକାର ହୋଇ । ପାଖର ରାଧାଗୋବିନ୍ଦ ମନ୍ଦିରରୁ ଶୁଭିଲା ପ୍ରଭାତ ଅବକାଶର ଶଙ୍ଖ-ଘଣ୍ଟା-ଧ୍ୱନି । ସ୍ୱର୍ଣ୍ଣ ଚମକି ପଡ଼ି ଉଠିବସିଲା, ସୃଷ୍ଟିକର୍ତ୍ତାଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି ଦେଇ । ରାତିରେ ଯିବା ସମୟରେ ସୁରମାଷ୍ଟ୍ରେ ଆକସ୍ମିକ ଭାବରେ କହି ଦେଇଥିଲେ, "ବାଲ୍ୟକାଳୁ ଧର୍ମଧନ ମୁଁ ସଞ୍ଚିବ ଏ ଜୀବନ ଅନିଶ୍ଚିତ ।"

ସ୍ୱର୍ଣ୍ଣର ମନେହେଲା, ସେଇ ଋଷି-ହୃଦୟର ଉଦାତ୍ତ ଧ୍ୱନି ଅବନୀରୁ ଉଠି ସ୍ପର୍ଶ କରୁଛି ଅସୀମ ଆକାଶକୁ । ଉଜ୍ଜ୍ୱଳତର ହୋଇ ଦିଶିଲାଣି ଅତୀତର ସ୍ମୃତି । ମନେ-ପଡ଼ିଗଲା ଶ୍ୱଶୁର କହିଥିବା କଥା, ରାତିରେ ଶୋଇବା ପୂର୍ବରୁ ଶ୍ୱଶୁର ତନ୍ମୟ ହୋଇ ଗାଇ ଯାଆନ୍ତି, "ରେ ଆତ୍ମନ୍, ନିଦ୍ରା ପରିହରି ଯେତେ ତନ୍ଦ୍ରାର ଚେତନ, କର କର ନିରୀକ୍ଷଣ ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି, ଭେଟିବାକୁ ମୃତ୍ୟୁସିନ୍ଧୁ କରାଳ ଲହରି ।" ସେଦିନର ଅବୁଝା ଆଉ ଅଧବୁଝା କଥା ଆଜି ଉଦ୍ଭାସିତ, ସମ୍ପୂର୍ଣ୍ଣ ସୁବୋଧ ହୋଇଉଠିଛି ସ୍ୱର୍ଣ୍ଣର ଆଖି ଆଗରେ । ଭକ୍ତକବି ମଧୁସୂଦନଙ୍କ ସୂକ୍ତିଗୁଡ଼ିକୁ ଆପଣାର ଏକାନ୍ତ ଆପଣାର କରିନେଇ ଗାଇ ଯାଉଛନ୍ତି ଶଯ୍ୟା ଉପରେ ପଡ଼ିରହି । ଏଇ କଥିରେ-ଏଇ ବିଛଣା ଉପରେ ଶୋଇ ପଢ଼ି ଯାଉଥିଲେ ସେ । ଏ ଘରେ ଭରିରହିଛି ସେହି ଧ୍ୱନି । ସୁଯୋଗ ପାଇଲେ ସ୍ୱତଃ ଗୁଞ୍ଜରିତ ହୋଇ ଉଠୁଛି କାନ ପାଖରେ ।

ରାଧାଗୋବିନ୍ଦ ମନ୍ଦିରରେ ଘନ ଘନ ବାଜିଉଠୁଛି ପ୍ରଭାତ ଅବକାଶର ଶଙ୍ଖ-ଘଣ୍ଟା । ଏଇ ଘଣ୍ଟାଧ୍ୱନି ହିଁ

ସ୍ୱର୍ଣ୍ଣିଙ୍କୁ ଶୁଣେଇ ଦେଉଥାଉଛନ୍ତି, ଜୀବନର କୋଟିଏ ଦିନ କାଳଗର୍ଭରେ ମିଶିଯିବା କଥା । ସେ ଉଦାସ ଦୃଷ୍ଟିରେ ସ୍ୱର୍ଣ୍ଣ ଦେଖିଲା, ଶ୍ୱଶୁରଙ୍କର ଖଟଟି ପଡ଼ିଛି । ବନ୍ଧ ସିନ୍ଦୁକଟା ଯିମିତି ଥିଲା ସିମିତି ରଖାହୋଇଛି କୋଠାଏ କୋଣକୁ । ତାଙ୍କର କଣ୍ଠର ସ୍ୱର ତ ଏଇ ଘରୁ ଶୁଭୁଛି । କିନ୍ତୁ ହାୟ ଶ୍ୱଶୁର ଆଉ ନାହାନ୍ତି—”

ପରମାନନ୍ଦ ପଛଆଡ଼ୁ ଆସି ବସି ପଡ଼ିଲେ ସ୍ୱର୍ଣ୍ଣର ପିଠି ପାଖକୁ । ସ୍ୱର୍ଣ୍ଣ ଉଚ୍ଛପାଖକୁ ଫେରିଯିବା ଆଖିଲୁହ ପଡ଼ିଲା ପରମାନନ୍ଦଙ୍କ କାନ୍ଧ ଉପରକୁ । ପରମାନନ୍ଦ ସ୍ୱର୍ଣ୍ଣିଙ୍କୁ କୋଳ ଘିଚ କରି କହିଲେ, “ସତରେ ତୁମେ ଅଭାଗିଣୀ ହୋଇଗଲ ଶୁକବୋଉ ! ତମର ପ୍ରିୟ ଘରଟାକୁ ଯେ ଏକାଥରକେ ଛାଡ଼ିଦେଲ !”

ସ୍ୱର୍ଣ୍ଣ ଆନନ୍ଦ ଆବେଗରେ କମ୍ପିଉଠି କହିଲା, “ଶ୍ୱଶୁର କହନ୍ତି, ବୈରାଗ୍ୟ ଜାତ ହେବାମାତ୍ରେ ହିଁ ଗୃହତ୍ୟାଗ କରିବ ।” ପରମାନନ୍ଦ ସ୍ୱର୍ଣ୍ଣର ମୁହଁ ଟେକି ଧରିଦେଇ କହିଲେ, “ସତେ କଅଣ ତୁମେ ସେ କଥା ଭାବୁଛ ଶୁକବୋଉ ! ମୁଁ ଯେ ଏକାନ୍ତରେ ତୁମର ହିଁ । ମତେ ଛାଡ଼ିଦେଇ କୈଣ୍ଠିଅଡ଼େ ଯାଇପାରିବ ନାହିଁ । ତୁମକୁ ଏ ଦେଖି ମୁଁ ଦିନେ ମଧ୍ୟ ରହିପାରିବ ନାହିଁ ।”

ସ୍ୱର୍ଣ୍ଣ ପରମାନନ୍ଦଙ୍କ ପାଦ ଉପରେ ମଥା ରଖି କହିଲା, “ତୁମକୁ ଛାଡ଼ି ମୁଁ ସ୍ୱର୍ଗକୁ ମଧ୍ୟ ଯିବାକୁ ଇଚ୍ଛା କରିନାହିଁ କି କରିବିନାହିଁ । ତୁମେ ଯେ ମୋ ଜୀବନର ସର୍ବସ୍ୱ । ମୋର ଅନ୍ତରାତ୍ମା ସେ ଏଇ କଥା କହି ତୁମର ସ୍ତବ କରୁଛି—

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁ ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବ ଦେବ !

ସବୁଜ ଭାଷାରେ କହିବାକୁ ଗଲେ, ତୁମକୁ ମୁଁ ପାଉଥାଉଛି ଜନ୍ମ ଜନ୍ମାନ୍ତରରେ । ତୁମେ ମୋର ଦେବ ଦେବ ମହାଦେବ ।” ପରମାନନ୍ଦ ସ୍ୱର୍ଣ୍ଣିଙ୍କୁ ଛାତି ଉଠେଇ ନେଇ କହିଲେ, “ତୁମଠୁ ଶୁଣିଥିବା ସବୁ ଶୁଣିବ ମୋର ଆତ୍ମା କହି ଦେଉଛି ଆସିଲା ଯେ, ତୁମେ ପୂଜା କରୁଛ କା’ ତୁମର ଶ୍ୱଶୁରଙ୍କୁ-ସ୍ମରଣ କରି ପୂଜା ପାଉଛ ! ତୁମ ମତେ ଦେବତାର ଆସନଂର ବସାଇ ଯେତେ ପୂଜା କରୁଛ, ମୁଁ ସେତିକି ମନୁଷ୍ୟର ଆସନକୁ ଓହ୍ଲେଇ ଆସୁଛି । ମୋର ପ୍ରେମଟିଆରୁ ମନ ପୂଜା କି ସ୍ୱର୍ଗ ସ୍ୱର୍ଗ ହିଁ ପ୍ରେମ ।” ସ୍ୱର୍ଣ୍ଣ ସ୍ୱାମୀଙ୍କୁ ଆଲିଙ୍ଗନ ପାଶରେ ଆବଦ୍ଧ କରି କହିଲା, “ତୁମେ ଯେ ମୋର ଶ୍ୟାମ, ମୁଁ ଶୟନେ, ସ୍ୱପନେ, ଜାଗରଣେ ଭିତରେ ଶୁଣୁଛି ତୁମର ସ୍ୱାଦୁ ମଧୁର ବଂଶୀସ୍ୱର ।”

ପରମାନନ୍ଦ ଉଚ୍ଚହାସ୍ୟ ଧ୍ୱନିରେ ଘର ଭରିଦେଇ କହିଲେ, “ତୁମେ ତ ତୁମର ନାଟକର ନାୟିକା ଭଳି ଭାବ କହୁଛ ଶୁକବୋଉ ? ତୁମ କଣ୍ଠରେ ଭାବାବେଗର ଉଚ୍ଛ୍ୱାସ ଦେଖି ମୁଁ ବଡ଼ ଆନନ୍ଦିତ ହେଉଛି । ଅଚ୍ଛା ଉଠି ବସ । ମୁଁ ଏଠିକି ଆସି ତୁମ କାର୍ଯ୍ୟରେ ବାଧା ଦେଉଛି ।”

ମାର୍ଗଶିର ମାସର ସନ୍ଧ୍ୟା । ଶୀତଟା ଘନେଇଁ ଆସିଛି ଧୀରେ ଧୀରେ । ହିର ହିର୍-ହୋଇ ବହୁ ଯାଉଥିଲା ଶୀତ ସମୀରଣ । ରଜନୀଗନ୍ଧା ଫୁଲର ସୁଗନ୍ଧରେ ଭରିଯାଇଥିଲା ଘରର ଅଗଣା, ବାରଣ୍ଡା ସବୁ । ପରମାନନ୍ଦ ଅଗଣାଆଡ଼ୁ ସ୍ୱର୍ଣ୍ଣିଙ୍କୁ ଡାକ ଡାକ ଆସି ଦେଖିଲେ, ସ୍ୱର୍ଣ୍ଣ ମଉନରେ ବସିଛି ବାରଣ୍ଡାର ବେଞ୍ଚ ଉପରେ । ସେ ଟିକିଏ ଉଚ୍ଚସ୍ୱରରେ ହିଁ ପଚାରିଲେ, ଇମିତ ସନ୍ଧ୍ୟା ସମୟରେ ଅନ୍ଧକାର ଇମିତ ଏକାକୀ କରି ବସିଛ ! କଅଣ ହେଲା ଆଜ ? ବାଦ୍ୟକାରୀ ସବୁ ବସିଛନ୍ତି ବାହ୍ରପିଣ୍ଡାରେ । ଆଜ ତାଙ୍କର ନାଟକଟିକୁ ଦ୍ୱାର ଉଦ୍‌ଘାଟନ କରିବେ । ମତେ ନ ହେଲେ ସେ ଯିବେନାହିଁ । ତୁମେ ତ ଯିବ । ମୁଁ ମୁହଁ ହାତ ଧୋଇ ଆସୁଛି । ତୁମେ ଇତିମଧ୍ୟରେ ଯିବାକୁ ପ୍ରସ୍ତୁତ ହୋଇଯାଅ ।”

ପରମାନନ୍ଦ ବାରିପାଖ ଆଡ଼କୁ ଯିବାବେଳେ ହିଁ ବିଶ୍ୱ ଲେଙ୍କ ଧାଇଁ ଆସି କହିଲା, “କାଦମ୍ବିନୀ ଦେଇ କେତେବେଳଠୁ ଆସି ବସିଛନ୍ତି । ଆଜ ବାଦ୍ୟ ପ୍ରସ୍ତୁତି କରିବେ ।” ସ୍ୱର୍ଣ୍ଣ ସ୍ୱାମୀ ପାଖର ଗଲାରୁ ଅଭିମାନରେ

ଧୋଇ ଧୋଇ କହିଲା, "ବାଦ୍ୟକାରେ ସକାଳେ ଏକଥା କହିଦେଇ ଯାଇଥିଲେ, ଅନ୍ୟ କଥା ଚିନ୍ତାକରି ନାଟକ କଥା ଏକାଥରକେ ଭୁଲିଯାଇଥିଲୁ । ସେ ଆସିବା କଥା ତ ମୁଁ ଜାଣି ନ ଥିଲି ବଶୁ ! ଯାଉଛି ଏଯାଣି ଶାଢ଼ୀଟା ପିନ୍ଧି ଆସିପିବି ।

ସ୍ୱର୍ଣ୍ଣ ଶାଢ଼ୀ ବଦଳେଇ ଆସି ମୁହଁ ଦେଖୁଥିଲା ବାରଣ୍ଡାର ଦର୍ପଣ ପାଖରେ ଠିଆହୋଇ । ପରମାନନ୍ଦ ସ୍ୱର୍ଣ୍ଣର ପିଠିରେ ହାତ ଦେଇ କହିଲେ, "ତୁମର ସୁନ୍ଦର ଆଉ ଆକର୍ଷଣୀୟ ରୂପଟି ଯେମିତି ସିମିତି ଅମ୍ଳାନ ପୁଷ୍ପ ପରି ରହିଛି ଶୁକବୋଉ !" ସ୍ୱର୍ଣ୍ଣ ନତ ହୋଇପଡ଼ି ସ୍ୱାମୀଙ୍କ ପଦଧୂଳି ମଥାରେ ଲଗାଇ କହିଲା, "ମୁଁ ଆଜି ଘରର ଦୁଆରମୁହଁକୁ ବାହାରୁଛି, ମତେ ଆଜି ଆଶୀର୍ବାଦ ଦିଅ ।"

ସ୍ୱାମୀ-ସ୍ତ୍ରୀ ଦୁହେଁ ଦାଣ୍ଡବାରଣ୍ଡାରୁ ଓହ୍ଲେଇ ତଳ ପାହାଚରେ ପାଦ ଦେଲାବେଳକୁ ବାଦ୍ୟକାର "ପରମାନନ୍ଦଙ୍କ ଆଗରେ ହାତ ଯୋଡ଼ିଦେଇ କହିଲେ, ଆଶୀର୍ବାଦ ଦିଅ ଗେ ସେଇଁ ପୁଅ, ମୋ ମାଆ ଲକ୍ଷ୍ମୀ ଆଜି ପ୍ରଥମ କରି ପଲାସପୁର ଗାଁ-ଦାଣ୍ଡରେ ପାଦ ରଖି ଚାଲିବେ ।"

ପରମାନନ୍ଦ ଟିକିଏ ଆବେଗରେ ହିଁ କହିଲେ, "ତୁମର ମାଆ ଲକ୍ଷ୍ମୀ ତ ଶକ୍ତିହୀନା ନୁହଁନ୍ତି ବାଦ୍ୟକାରେ ! କଥାରେ ଅଛି—ନରଶ୍ରେଷ୍ଠକୁ ଜଗତ୍ପାଣ ରକ୍ଷା କରନ୍ତି । ସେ ତ ପରମପିତାଙ୍କ ଆଶୀର୍ବାଦ୍ ପାଇ ଏତେବଡ଼ ଅସାଧ କାର୍ଯ୍ୟରେ ହାତ ଦେଇଛନ୍ତି । ଆମେ କିନ୍ତୁ ଇମିତି ଦୁର୍ବଳ ଯେ ଆପଣାର ଲୋକଙ୍କୁ ଅତି ନିକଟରେ ଦେଖି ଦେଖି ସେମାନଙ୍କୁ ସାଧାରଣ ଦୃଷ୍ଟିରେ ରଖି ସେମାନଙ୍କ ମହତହୃଦୟର ରୂପ ଦେଖିପାରୁ ନ ଥାଉଁ । ତେଣୁ କଥାରେ କହିଦେଇଛି— ସେ ଆମରି ପରି ଜଣେ ସାମାନ୍ୟ ମନୁଷ୍ୟ । କିନ୍ତୁ ସେଇ ସାମାନ୍ୟ ମନୁଷ୍ୟଟି କେତେବେଳେ ପୁଣି ସ୍ୱୟଂ ମହାନ୍ ହୋଇ ଚିରକାଳର ବରଣୀୟ ହୋଇଯାଏ, ତାହା ହିଁ ଏବେ ମୁଁ ଅନୁଭବ କରୁଛି ।"

ବାଦ୍ୟକାର ମନେ ମନେ ପୁଲକିତ ହୋଇଉଠି କହିଲେ, "ତାହାହେଲେ ମଧ୍ୟ, ଗୋସେଇଁପୁଅ, ତୁମେ ଟିକିଏ ଏସବୁ କଥାରେ ହାତ ନ ଦେଲେ—"

ପରମାନନ୍ଦ ଚଞ୍ଚଳ ପଦରେ ଅଗ୍ରସର ହେଉ ହେଉ କହିଲେ, "ଏଥିରେ ମୁଁ ହାତଦେବା ଅର୍ଥ ହେବ ହସ୍ତକ୍ଷେପ କରିବା ।

× × ×

ଶୀତକାଳର ସନ୍ଧ୍ୟା । ହାଟବାହୁଡ଼ା ସମୟ । ବେପାରୀ ସ୍ତ୍ରୀ ଏବଂ ପୁରୁଷ ବିକାକିଣା କାମ ଶେଷକରି ଦେଇ ଚାଲିଛନ୍ତି ଘର ଆଡ଼କୁ । ସେମାନଙ୍କ ଭିତରୁ ପ୍ରାୟ ସମସ୍ତଙ୍କ ମୁଣ୍ଡ ଉପରେ ଜଦା ହୋଇଥିଲା ଟୋକେଇ କିମ୍ବା ବସ୍ତାଟାଏ । ନାଟକ ସମ୍ବନ୍ଧରେ ଆଲୋଚନା କରି କରି ଯାଉଥିଲେ ସେମାନଙ୍କ ଭିତରୁ ଅନେକେ । ବୃନ୍ଦାବନ ବିଲରୁ ତାର ଆୟ କରିଥିବା ସୋରିଷ ଓ ଝୁଡ଼ଙ୍ଗମଞ୍ଜି ବିକିକରି ଟୋକେଇରେ ଧରିଥିଲା, ଲୁଣ, ତେଲ ମସଲା ଇତ୍ୟାଦି ନିଜର ଛୋଟ ଦୋକାନଟି ନିମନ୍ତେ । ସେ ରୁକ୍ମଣୀ ମାଉସୀକୁ ଟିକିଏ ଠେଲିଦେଇ କହିଲା, "ଏ ମାଉସୀ, ସୁଉକଟେ ପଇସା ଖରଚ କରି ନାଟ ଦେଖି ଆସିବା । ବାମୁଣଘର ବୋହୂ ପରିଦନ ନାଟ କରିବ । କଅଣ, କଥା କହୁନୁ ? ମୁଁ ପଛେ ତତେ ସୁଉକଟେ ଦେବି ।"

ଘନା ପଣ୍ଡା ତା' କାନ୍ଧର ଭାରି ବୁଜୁଳାଟାକୁ ଟିକିଏ ଉଠେଇ ରଖି କହିଲା, "ବୁରୁନ୍ଦୀଟା ସବୁ ସବୁ କଥା ଜାଣିଲା ପରି କଇଯାଉଚି । ବାମୁଣଘର ବୋଉ ନାଟ କରୁଚି ନା ନାଟ ନେଖିବ । କ ହାଟରେ କାଗଜ କଣ୍ଡାହେଲା ଦେଖିଲୁ କି ! ନୋକ କୁହାକୁହି ହେଉ ଥିଲେ ଶୁଣିନୁ !" ବୁରୁନ୍ଦୀ ଉତ୍ସାହ ପାଇ କହିଲା, "ତୁ ସିନା ପାଠ ପଢ଼ିଚୁ ! ମୁଁ ଖାଲି ମାଇକିନା ମଣିଷଟେ । ସିଏ ନାଟ ନେଖିବ କି କରୁଚି କମିତି ଜାଣିବି । ଯାହା କରିଥାଉ, ଆମେ ଜଣକୁ ସୁଉକଟେ ନେଖାଏ ଖରଚ କରି ଆସିବା, ନାଟ ଦେଖିଯିବା ।" ରୁକ୍ମଣୀ ମାଉସୀ କହିଲା, "ସୁଉକଟେ ଖରଚ ହେଲେ ହେବ ପଛେ, ମୁଁ ଏ ନାଟ ଦେଖି ଆସିବି ।"

ବାଦ୍ୟକାର କହିଲେ, "ଏ ରାସ୍ତାରେ ହାଟପେରନ୍ତା ଲୋକଙ୍କରେ ଗହଳ ହୋଇଯାଉଛି । ଆପଣ ଏଇଠୁ ବାଟ ଭାଙ୍ଗି ଦେଉଳସାହି ବାଟେ ଯିବା ବାହାର ।" ସ୍ୱର୍ଣ୍ଣ କହିଲା, ଏମାନଙ୍କର କଥା ଶୁଣିବାକୁ ଭଲ ଲାଗୁଛି ତ ବାଦ୍ୟକାରେ ! ମନୁଷ୍ୟ ମୁହଁରୁ ଏଇ ଧ୍ୱନି ଉଠୁଛି, ଆମର ମାରବ ନିସ୍ପନ୍ଦ ହୃଦୟକୁ ସ୍ପର୍ଶ କରିଦେଉଛି ।" ବାଦ୍ୟକାର ହସିଦେଇ କହିଲେ, "ଶୁଣିଲ ନା ଗୋସେଇଁପୁଅ ! ମାଟିର ମନ ଆଜି ଜୀବନ୍ତ ଚଞ୍ଚଳ ହୋଇଉଠିଛି । ଆଉ ଦୁଇଟା ଦିନ ମାତ୍ର ବାକି । ତା ପରେ ମୋ ମାଆଙ୍କ ଅନ୍ତଃପୁରର କଥା ଏ ସ୍ଥାନର ଲୋକମୁଖରେ ପ୍ରକାଶ ପାଇବ । ପରସ୍ପରରେ କୁହାକୁହି ହେବେ ନାଟକ ଘର ଚରିତର କଥା ।" ବାଦ୍ୟକାର, ପରମାନନ୍ଦ ଉଭୟେ ନାଟକ ସମ୍ବନ୍ଧରେ ଆଲୋଚନା କରି କରି ଚାଲୁଥିଲେ ଧୀରେ ଧୀରେ । ସ୍ୱର୍ଣ୍ଣ ସେଥିରେ ଯୋଗ ନ ଦେଇ ଚାଲିଥିଲା, ଦୂରରୁ ନାଟକଘର ଆଡ଼କୁ ଚାହିଁ ଚାହିଁ ।

ତିନି ହେଁ ପ୍ରବେଶ କଲେ ନାଟକଘରର ସମ୍ମୁଖରେ । ଫାଟକର ଶୀର୍ଷକୁ ଜଳୁଥିଲା ଗ୍ୟାସ୍‌ଲାଇଟ୍ । 'ସ୍ୱାଗତମ୍' ଲେଖା ହୋଇ ବନ୍ଧା ହୋଇଥିଲା ଜରି ଟଲମଲ ତୋରଣ । ବାଦ୍ୟକାରଙ୍କ ପୋଷ୍ୟପୁତ୍ର ଭୁବନେଶ୍ୱର ଏବଂ ବିଦ୍ୟାଧର ନାଟକୀୟ ବେଶଭୂଷାରେ ସଜ୍ଜିତ ହୋଇ ଫୁଲମାଳ ଧରି ଠିଆ ହୋଇଥିଲେ ସମ୍ବର୍ଦ୍ଧନା ଦେବାକୁ । ସୁରମାଙ୍କ୍ଷେ ଭିତର ଆଖିକୁ ଚଉକି ଉପରେ ବସିଥିଲେ । ପରମାନନ୍ଦ ପ୍ରଭୁଙ୍କୁ ଦେଖି ବଜେଇବା ଆରମ୍ଭ କରିଦେଲେ ହାରମୋନିୟମ୍‌ଟାକୁ ଧରି । ଦୁଆର ମୁହଁରେ ହିଁ ଭୁବନେଶ୍ୱର ଏବଂ ବିଦ୍ୟାଧର ପୁଷ୍ପମାଲ୍ୟ ଅର୍ପଣ କରିଦେଲେ ପରମାନନ୍ଦ ଆଉ ସ୍ୱର୍ଣ୍ଣର ଗଳାରେ । ତପସ୍ୱୀ ବାଳକବେଶରେ ସଜ୍ଜିତ ହୋଇଥିବା ଭୁବନେଶ୍ୱର ଏବଂ ବିଦ୍ୟାଧରଙ୍କୁ ଦେଖି ବିସ୍ମୟ ବିହ୍ୱଳ ହୋଇ ଉଠିଥିଲା ସ୍ୱର୍ଣ୍ଣର ମନ । ନାଟକଘର ଭିତରକୁ ପ୍ରବେଶ କରୁକରୁ ବିଦ୍ୟାଧର ଆଉ ଭୁବନେଶ୍ୱର ସମସ୍ୱରରେ ସ୍ୱାଗତ ସଙ୍ଗୀତ ଗାଇଲେ ଉପେନ୍ଦ୍ର ଭଞ୍ଜଙ୍କ 'ବଇଦେହୀଶବିଳାସ' ଗୀତର ଅନୁକରଣରେ—

ହେଲ ଗୋ ଜନନୀ ସୁମନ ହାର
ହାର ଲୁଟେ ଏହା ଭକତି ଭାର,
ବାଣୀଦେବୀଙ୍କର ଅର୍ଚ୍ଚନା କରି
ଅର୍ଜିଛ ଜ୍ଞାନ ଗୌରବ ଶିରି
ଧନ୍ୟ ଧନ୍ୟ ତବ ଜନ୍ମ
ସଂସାର ବନ୍ଧନ ଭୁଲିବାରେ ସହଜେ
ସାଧୁଛ ମାନବ ଧର୍ମ । ୧ ।

ଅମୃତର ଅନୁସନ୍ଧାନ ଅର୍ଥେ
ଆରମ୍ଭିଛ ଯାହା ଦୁର୍ଗମ ପଥେ,
ନାହିଁ ଯେ ଏ ପଥେ କେହେଁ ସାଥୀ
ଏକାକୀ ପଥିକ ନାହିଁ କେ ସାହା
ହୃଦୟେ ଅନନ୍ତ ତୃଷ୍ଣା ଯେ,
ଗତି କରିଯାଅ ସ୍ଥିର ଦେଇ ଲକ୍ଷ୍ୟ
ପଦେ ତାଙ୍କ ଦୁଃଖ ଗ୍ଲାନି ଯେ । ୨ ।

ନେଇଅଛ ଯାହା ଯେ ମହାମନ୍ତ୍ର
ତୁମେ ଜାଣ ତାର ନିଗୂଢ଼ ତତ୍ତ୍ୱ,
କର୍ମଯୋଗ ଅନ୍ତେ ଜ୍ଞାନଯୋଗରେ
ହୋଇଛ ନିମଗ୍ନ ଅନୁରାଗରେ
ତୁମେ ଗୁରୁ, ତୁମେ ଶିଷ୍ୟା ଯେ,
ହୃଦ ପଦ୍ମେ ତବ ଲକ୍ଷ୍ମୀ ସରସ୍ୱତୀ
ରହିଛନ୍ତି କରି ବସା ଯେ । ୩ ।

ତୁମର ଧରମ ତୁମର କର୍ମ
ହେଉ ଗୋ ଜନନୀ ଆମର ଧର୍ମ
ଚରଣରେ ତବ କର ଧରଣି
ଶୁଭାଶିଷ ଧାରା ଦିଅ ବରଷି
ଅନୁସନ୍ଧାନ ଚିନ୍ତା ଯେ
ସାଫଲ୍ୟମଣ୍ଡିତ କରିବୁ ଜନନୀ,
ଆମର ଜୀବନ ଜନ୍ମ ଯେ । ୪ ।

ଅପ୍ରତ୍ୟାଶିତ ଭାବରେ ତାହାଙ୍କ ହିଁ ସ୍ୱାଗତ ସମ୍ବର୍ଦ୍ଧନାରେ ସ୍ୱର ଶୁଣି ଉଲ୍ଲସିତରେ ବିହ୍ୱଳ ହୋଇଉଠିଲା ସ୍ୱର୍ଣ୍ଣ । ସ୍ୱର୍ଣ୍ଣ ଏବଂ ପରମାନନ୍ଦଙ୍କୁ ପାଛୋଟି ନେଇ ସୁରମାଙ୍କ୍ଷେ ବସେଇଦେଲେ ନାଟକ ମଞ୍ଚ ଉପର ଚଉକିରେ ।

ଇତିମଧ୍ୟରେ ହାଟରୁ ଫେରୁଥିବା ଲୋକ ନାଟକଘରେ ଆଲୋକ ଦେଖି ଗୀତବାଦ୍ୟ ଶୁଣି କୌତୂହଳରେ ପ୍ରବେଶ କରିଗଲେ ଅନାହୂତଭାବରେ । ପୁରମାଷ୍ଟ୍ରେ ଏବଂ ଗ୍ରାମୀଣ ସାହିତ୍ୟ ସଂସଦର ସମ୍ପାଦକ ଆଗନ୍ତୁକମାନଙ୍କୁ ସ୍ୱର୍ଣ୍ଣର ପରିଚୟ ପ୍ରଦାନ କରି ତା'ର ସାହିତ୍ୟ ସାଧନାର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ଅବଶେଷରେ ସେ ତାଙ୍କର ନିଜ ହାତର ତିଆରି ସାହିତ୍ୟ ଅନୁଷ୍ଠାନ-ପ୍ରତି ସାହାଯ୍ୟ-ସହାନୁଭୂତି ରଖି ଉନ୍ନତି ପଥରେ ଅଗ୍ରସର କରାଇବା ସକାଶେ ଅନୁରୋଧ ମଧ୍ୟ କଲେ ।

ପତ୍ନୀ ଗୌରବରେ ମନେ ମନେ ଉତ୍ଫୁଲ୍ଲ ହୋଇ ସ୍ୱର୍ଣ୍ଣର ମୁହଁକୁ ଚାହିଁଲେ ପରମାନନ୍ଦ । ସେ ଦେଖିଲେ ସେ ସ୍ୱର୍ଣ୍ଣ ବିଷାଦପୀଡ଼ିତ ମୂର୍ତ୍ତିଟି ପରି ବସିଛି ତଳକୁ ଚାହିଁ । ସେ ଭାବିଲେ, "କି ଆଶ୍ଚର୍ଯ୍ୟ ଆଜିର ପରି ଗୋଟାଏ ଦିନରେ, ଇମିତି ଗୋଟାଏ ପରମ ଆନନ୍ଦ ଲଭିବା ସୁଯୋଗରେ ମୁଖମଣ୍ଡଳ ଆନନ୍ଦ ଉଜ୍ଜ୍ୱଳ ହିଁ ଶୁଖିଆସିଲା । ତେବେ ହେଲା କଅଣ ? ଏ ଅବସ୍ଥାରେ ତ ଇଏ ଆଉ ପଦଟିଏ ମଧ୍ୟ କହିପାରିବେ ନାହିଁ । ବିଶେଷରେ ସେ ଯଦି ସେଠି ରହନ୍ତି, ତାଙ୍କର ଉପସ୍ଥିତିଟା ସ୍ମରଣ କରି କହିବା କଥା ଭୁଲି ଆକସ୍ମିକ କିଛି ଗୋଟାଏ କହିଦେଇପାରନ୍ତି ।"

ଏ କଥା ଚିନ୍ତା କରୁକରୁ ହଠାତ୍ ଚଉକିରୁ ଉଠିଯାଇ ବାଦ୍ୟକାରଙ୍କୁ କହିଲେ, "ମୁଁ ଯାଉଛି ବାଦ୍ୟକାରେ, ଝିଅକୁ ପଠାଇଦେବ ।" ବାଦ୍ୟକାର କଅଣ ଗୋଟାଏ କଥା କହିବାକୁ ଆରମ୍ଭ କରୁଥିଲେ, ପରମାନନ୍ଦ ସେ କଥା ନ ଶୁଣି ଚାଲିଗଲେ ପଛପାଖ ବାଟଦେଇ ।

ଏତିକିବେଳେ ମଦନ ମହାପାତ୍ରେ ତାଙ୍କର ମୁଗ ତିନିଗୁଣର ଭରଣ ମାପ ଶେଷକରି ହାଟଆଡ଼ୁ ଆସୁଥିଲେ ଘରକୁ । ସାଥିରେ ଥିଲେ ମଦନ ସ୍ୱାଇଁ । ମଦନ ମହାପାତ୍ରେ ମନ ଭିତରର ବିସ୍ମୟ ଦମନ୍ କରି ନ ପାରି କହିଲେ—"ସତେ ସତେ ନାଟକ କରେଇଦେଲ ହେ ମଇଁ ! ମାଇକିନାଟାର ସାହାସ ତ କିଛି ଊଣା ନୁହେଁ !" ମଦନ ସ୍ୱାଇଁ ନାଟକଘର ଆଡ଼କୁ ଅଗ୍ରସର ହେଉ ହେଉ କହିଲେ, "ଆଜି ଇ ନାଟକ ଅଭିନୀତ ହେବନାହିଁ । ମୁଁ ଜାଣିଛି, ଦ୍ୱାର ଉଦ୍‌ଘାଟନ କରିବେ ବୋଲି ମାଷ୍ଟ୍ରେ କହୁଥିଲେ ।" ମହାପାତ୍ରେ ବକ୍ର ପ୍ରମିଶ୍ରା ହସ ହସି କହିଲେ, "ଦ୍ୱାର ଉଦ୍‌ଘାଟନ ଆଉ ଅଭେ କଅଣ ହେ ମଇଁହେ ! ସତ କହିଲ ମଇଁହେ, ଆମର ସମାଜ ବୋଲି ଯେଉଁ ପଦାର୍ଥ କଥା ଥିଲା, ଏସବୁ ଅଘଟଣ ବିଷୟଗୁଡ଼ାକ କଅଣ ତା' ଉପରେ ଆଘାତ ଦେଉନାହିଁ ?" ମଦନ ସ୍ୱାଇଁ ଜବାବଦେବା ଆଗରୁ ଦୁହେଁ ଯାଇ ବସିଯାଇଥିଲେ, ରଙ୍ଗମଞ୍ଚ ତଳର ସିଟ୍‌ରେ ପଡ଼ିଥିବା ବେଞ୍ଚ ଉପରେ ।

ସାହିତ୍ୟ ସଂସଦ ସମ୍ପାଦକଙ୍କର କହିବା ଶେଷ ହୋଇ ଆସୁଥିଲା ସମୟକୁ ବାଦ୍ୟକାର ସାଇଡ଼ ସିନ୍ ପାଖକୁ ଠିଆହୋଇ ସ୍ୱର୍ଣ୍ଣକୁ କହିଲେ, "ମାଆ, ଏଥର ତମର ପାଳିପଡ଼ିଲା, ବାକ୍ୟଦେବୀଙ୍କୁ ସ୍ମରଣ କର, ସେହି ତୁମକୁ ରକ୍ଷାକରିବେ ।" କଣ୍ଠରୋଧ ହୋଇଗଲା ବାଦ୍ୟକାରଙ୍କର ।

ସ୍ୱର୍ଣ୍ଣ ଠିଆହୋଇ ଚାହିଁଲା ଦର୍ଶକମଣ୍ଡଳୀଙ୍କ ଆଡ଼କୁ । ହାଟର ହେତାବହେତା ଏବଂ ରାସ୍ତାରେ ଯିବାଆସିବା କୌତୂହଳ ଜନତାଦ୍ୱାରା ଭରି ହୋଇଯାଇଥିଲା ନାଟକଘରର ଦର୍ଶକ ଆସନ । ଆଜି ପର୍ଯ୍ୟନ୍ତ ସେ ତ ଘରର ଅଗଣା ଭିତରେ ହିଁ ଆବଦ୍ଧ ହୋଇ ରହିଥିଲା; ଏଣୁ ସେ ଉଦ୍‌ଭ୍ରାନ୍ତା ହୋଇଉଠିଲା ନିମିଷକରେ ! ସମ୍ମୁଖରେ ବିପୁଳ ଜନତା, ସେ କିନ୍ତୁ ସମ୍ପୂର୍ଣ୍ଣ ଏକାକିନୀ । ହାତ ଚାରି ଯୋଡ଼ି ହୋଇଗଲା ଆପେ ଆପେ । ସେ-ବ୍ୟାକୁଳ ହୋଇ ଖୋଜିବାକୁ ଲାଗିଲା, ସଂସାର ଯୁଦ୍ଧ-କ୍ଷେତ୍ରରେ ଠିଆହୋଇଛି ସେ । ଭଗବାନ ଶ୍ରୀକୃଷ୍ଣ ତ ସାରଥି ରୂପରେ ସମ୍ମୁଖରେ ଠିଆହୋଇ ନାହାନ୍ତି ? ସେ କାହାକୁ ଶରଣ । କାହାକୁ କହିବ ?

ବାଦ୍ୟକାର ଅସ୍ପଷ୍ଟ ସ୍ୱରରେ ସିନ୍ ପାଖରୁ କହିଲେ "କହିଦିଅ ମାଆ ଦି' ପଦ କହିଦେଇ ଚାଲିଆସ—"

ଆବେଗଜଡ଼ିତ କଣ୍ଠରେ କହି ଉଠିଲା ସ୍ୱର୍ଣ୍ଣ । "ଜନତା ଜନାର୍ଦ୍ଦନ ! ଆପଣମାନେ ଇଚ୍ଛାକଲେ

ଆପଣମାନେ ଶୁଭଦୃଷ୍ଟିରେ ଅନାଇଁଦେଲେ ସମସ୍ତ ସୃଷ୍ଟି ହୋଇଯିବ ନନ୍ଦନକାନନର ସୁଗନ୍ଧ ସୁମନ । ଗୋଟାଏ ସ୍ୱଳ୍ପକୋଣରେ ଆବଦ୍ଧ ହୋଇ ରକ୍ତଶୂନ୍ୟା ନାରୀ ହାତରେ ଗଠିତ ମୂର୍ତ୍ତି ଉପରେ ଜନତା-ଦେବତାଙ୍କର ଯଦି ସସ୍ନେହ ଦୃଷ୍ଟି ପଡ଼ିଯିବ, ତାହାହେଲେ ସେ ମୂର୍ତ୍ତିଗୁଡ଼ିକ ଉପରେ ବୋଳି ହୋଇଯିବ ସ୍ୱର୍ଗୀୟ ସୁମନର ମଧୁମୟ ସୌରଭ । ନାରୀ ହୃଦୟର ସମସ୍ତ ଭକ୍ତି ଜନତାର ପଦତଳେ ଅର୍ପଣ କରିଦେଇ ଆଜି କହୁଛି, ତାର ବିଶ୍ୱାସ ହେଉଛି ଯେ ଏଇ ଜନତାର ଆଦେଶରେ ହିଁ ତା ହୃଦୟର ଦୁଃଖ ସୁଖ ଏହି ଜନତାର ପଦତଳେ ନିବେଦନ କରିବାକୁ ଅଗ୍ରସର ହୋଇଆସିଛି । ଦେଶ-ଦେବତାଙ୍କ ଶୁଭ-ଶିଷରେ ଯେଉଁ ନାଟକଗୁଡ଼ିକ ଗଢ଼ିଉଠୁଛି, ସେଗୁଡ଼ିକ ତାଙ୍କର ଚରଣ ତଳେ ପୂଜାପୁଷ୍ପ ପରି ଗୋଟି ଗୋଟି ହୋଇ ଲୋଟିଯାଉ, ଏହା ହିଁ ମୋର କାମନା; ମୋର ନମ୍ର ନିବେଦନ । କଳ୍ପନାଶ୍ରିତରୁ ଯେ ଏଇ ଯେଉଁ ନାଟକଗୁଡ଼ିକ ନିର୍ମିତ ହୋଇଛି, ଉତ୍କଳର ବରେଣ୍ୟବୃନ୍ଦ ଅନୁଗ୍ରହକରି ହୃଦୟର ସ୍ନେହ ଦେଇ ଏହାକୁ ଜୀବନ୍ତ, ଜାଗ୍ରତକରି ରଖନ୍ତୁ । ଏ ଦେଶର ମାନବବୃନ୍ଦ ସେମାନଙ୍କର ପିତୃ-ପିତାମହଙ୍କ ବହୁ ଅମୃତମୟ ଏବଂ ଉପଦେଶପୂର୍ଣ୍ଣ ଗ୍ରନ୍ଥସମୂହ ଅଧ୍ୟୟନ କରିଆସନ୍ତି । ତାହା ତ କେବଳ କଥା ନୁହେଁ, ତାହା ଜ୍ଞାନର ଆଲୋକ । ଏଇ ଯେ ସ୍ତ୍ରୀ ବ୍ୟକ୍ତିଟି କଥା କହିବାକୁ ଉଦ୍ୟମ କରିଛି, ସେ ମଧ୍ୟ ଅନୁଭବ କରୁଛି, ତାର ଏ ସୃଷ୍ଟିଦ୍ୱାରା ସାହିତ୍ୟ-ଜଗତର କୌଣସି ଅଭିବୃଦ୍ଧି ସାଧିତ ହେବନାହିଁ । ତେବେ ମଧ୍ୟ ସେ ବାମନ ହୋଇ ଧାଇଁଛି ଚନ୍ଦ୍ରକୁ ସ୍ପର୍ଶକରିବା ଆଶାରେ । ଏ ଯେ ଦୈବୀବାଦର ଇଚ୍ଛା ! ଏ ଯେ ବଞ୍ଚିରହିବା ଇଚ୍ଛା ଏ ଇଚ୍ଛାକୁ ଅବରୋଧ କରିବ କିଏ ?"

ଆବେଗର ଉଚ୍ଛ୍ୱାସରେ କଣ୍ଠରୋଧ ହୋଇଗଲା ସୁନ୍ଦରୀର ।

ମଦନ ମହାପାତ୍ରେ ତାଙ୍କ ମଉଳଙ୍କ ପିଠି ଥାପୁଡ଼େଇ ଦନ୍ତୁର ହସ ହସି କହିଲେ, "ଅଲୌକିକ ଆଜି କେଉଁଠି କି ଖୋଜିବ ହେ । ତଥା ଭକ୍ତ କଣ୍ଠ କଇ ଚାହୁଁ ଶୁଖିଗଲା ହେ ମଉଳ । ପାଣି ଘଣା ପିଇସାରି ଆଜି ଥରେ ଆରମ୍ଭ କରିବେ ।"

ଆବେଗକୁ ରୁଦ୍ଧକରି ସୁନ୍ଦରୀ ଆରମ୍ଭକଲା କହିବାକୁ ଆଉ ଥରେ । ସେ ଏପରିଟିକିଏ ସହଜ ଭାବରେ କହିଲା; "ଅନ୍ତର୍ଯ୍ୟାମୀ ଯେତେବେଳେ ସୁପ୍ରସନ୍ନ ହୋଇଯାଆନ୍ତି, ସେ ଆପଣା ହାତରେ ହୃଦୟ ଦ୍ୱାର ଖୋଲିଦିଅନ୍ତି ମୂଢ଼ ମନୁଷ୍ୟର । ଜ୍ଞାନୀମାନଙ୍କର ସୃଷ୍ଟିରେ ଆଲୋକ ପ୍ରବେଶ କରେ ସେଇ ପଥ ଦେଇ । ଏଇ ମୂଢ଼ ନାରୀଟି ଦେଖିବାକୁ ପାଉଛି ସେଇ ଜ୍ଞାନର ଆଲୋକ । ବ୍ୟାସଙ୍କ ବାଣୀ ଶୁଭୁଛି, 'ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିଂ ।' ମୂକ ହୋଇଯାଉଛି ବାଚାଳ । ପଙ୍ଗୁ ହୋଇ ଯିଏ ବସିଥା ପଡ଼ିଥିଲା, ସେ ନିମିଷକରେ ପରିଭ୍ରମଣ କରୁଛି ଅନନ୍ତ ଭୁବନ ।"

ମଦନ ମହାପାତ୍ର ତାଳି ମାରିବା ଦେଖି ଅନ୍ୟମାନେ ଭୁହାଇ ଭୁହାଇ ତାଳି ମାରିବାକୁ ଲାଗିଲେ । ମହାପାତ୍ର ଗଦ୍‌ଗଦ କଣ୍ଠରେ କହିଲେ, "ବାପର ନାଁ ନାହିଁ । ମାଆ ନାଁ ଜମକ ଡ଼ାଇଁ । ସ୍ୱାମୀ ଆଜି ଥରେ ଆସିଛନ୍ତି ଜନସମାଜକୁ ଉପଦେଶ ଦେବେ ! ମହାଭାରତକୁ କଥା ଆଣି ଇଏ ଆମକୁ ଶୁଣେଇବେ ଧର୍ମ ଉପଦେଶ । ବର୍ଷକୁ ଗୋଟେ ଜନ୍ମ କରିଥିଲେ କୋଡ଼ିଏଟା ପିଲାର ମାଆ ହୋଇ ବସିଥାନ୍ତା । ହାଣ୍ଡିଶାଳରୁ ବାହାରିପଡ଼ି କେଡ଼େ କଥା କହୁଛି ।"

ପାଖପଡ଼ିଶା ଗାଁର, ସେଇ ସ୍ଥାନର ମଧ୍ୟ ଅନେକେ ନାଟକଘରର ଦୁଆର ମୁହଁରେ ଆଲୁଅ ଦେଖି ସିଏ ଯିମିତି ଅବସ୍ଥାରେ ଥିଲେ, ସେଇଁପରି ହିଁ ପ୍ରବେଶ କରି ଯାଇଥିଲେ ଭିତରକୁ । କାହା ହାତରେ ପାନ ଡବାଟାଏ ତ କାହା ହାତରେ ପରିବାଘର ବୁଝୁଳାଟାଏ, କାହା ହାତରେ ସୋରିଷ-ମରିଚ ଇତ୍ୟାଦି । ଡଲଡଲାଥ ଗୋସ୍ୱାମୀ ମଧ୍ୟବିତ୍ତ ପରିବାରର ବ୍ୟକ୍ତି । ଯାଇସାରିଏ ସୁଦ୍ଧା ଜୀବନରେ ଉପାର୍ଜନ କରି ନ ଥିଲେ ସେ ।

ସେଥିପାଇଁ ତାଙ୍କର କୌଣସି ଉତ୍‌ଯୋଗ ମଧ୍ୟ ନ ଥିଲା । ଏଣୁ ସେ ମଧ୍ୟବିତ୍ତ ଅବସ୍ଥାରୁ ନିମ୍ନ ଆଡ଼କୁ ହିଁ ଗତି କରି ଯାଉଥାନ୍ତି ଧୀରେ ଧୀରେ । ଗୋସ୍ୱାମୀ ତାଙ୍କର ପାନ ଆଉ ପଇବାପଇ ବୁଜୁଳାଟାକୁ ଉଠେଇ ନେଇ ବିରକ୍ତିରେ କହିଲେ "ଆମେ ଏଆଡ଼େ ମରୁଚୁ; ହାତଖରଚକୁ ପଇସାଟିଏ ମିଳିବାକୁ ନାହିଁ । ଆପଣେ ନାଟକ କରୁଚନ୍ତି ! କଅଣ ଗୁଡ଼େ ଭଟର ଭଟର ହେଇ କହିଯାଉଚ । କିଏ ବୁଝିପାରୁଚି ? କଥାର ଆଦ୍ୟ ନାହିଁ ନା ପ୍ରାନ୍ତ ନାହିଁ । ପିଲା ହାଣ୍ଡ୍ରା ଧରି ଘରକରିବା ମାଇକିନା ମଣିଷଟେ, ଆସିଚ ନାଟକ କଥା କହି, ନାଟକ ?"

ଗୋସ୍ୱାମୀ ଚାଲିଯିବା ପରେ ମହାଦେବ ସ୍ତ୍ରୀଙ୍କି କହିଲେ, "ଗଢ଼ିହୋଇ ଆସୁଥିବା କଥାକୁ ଭାଙ୍ଗିଭୁଙ୍ଗି ଚୂନା କରିଦେବାକୁ ତୁମର ବଡ଼ ଶକ୍ତି । ସ୍ତ୍ରୀଲୋକଟି କେଡ଼େ ସୁନ୍ଦର ଆବେଗରେ କହିଯାଉଥିଲା । ତାଳମାରି କାଉ ଉଡ଼େଇଲା ପରି ଶୁଣିବା ଲୋକ-ଗୁଡ଼ାକୁ ଉଠେଇଦେଲ ।"

କିନ୍ତୁ କିନ୍ତୁ ସ୍ତ୍ରୀଙ୍କର ମନେପଡ଼ିଗଲା ଶ୍ୱଶୁରଙ୍କ କଥା । ସତେ ଯେଉଁପରି ସେ ଆସି ତା' ଆଗରେ ଛିଡ଼ା ହୋଇଛନ୍ତି, ଆଉ ସେ ତାଙ୍କର ମୁହଁକୁ ଏକାଗ୍ର ଚିତ୍ତରେ ଚାହିଁରହି କହିଯାଉଛି ତନ୍ମୟ ହୋଇ । ସେ କହିଲା, "ସୃଷ୍ଟି ଆରମ୍ଭରୁ ଯେତେ ଶାସ୍ତ୍ର, ପୁରାଣ ମହାପୁରୁଷମାନଙ୍କ ମୁଖରୁ ନିଃସୃତ ହୋଇଅଛି, ଏ ସମ୍ବନ୍ଧରେ ମଧ୍ୟ ନାରୀ ଆଜି ସମ୍ପୂର୍ଣ୍ଣ ଅଜ୍ଞ । ସେ ଜାଣେ ନାହିଁ ତାହାରି ପିତା, ତାହାରି ଭ୍ରାତା, ତାହାରି ପତି ଏବଂ ପୁତ୍ର—ଏହି ସମସ୍ତ ବେଦ, ବେଦାନ୍ତ, ଶାସ୍ତ୍ରପୁରାଣମାନଙ୍କର ସ୍ରଷ୍ଟା । ସାମାନ୍ୟକୁ ମହତ୍, ଅଘଟଣକୁ ଘଟଣ କରି, ଅସ୍ୱାଭାବିକକୁ ସ୍ୱାଭାବିକ କରି ନାରୀପ୍ରାଣରେ ସଞ୍ଚାର କରାଇଛନ୍ତି ଅନିର୍ବଚନୀୟ ଆନନ୍ଦ । ବାଲ୍ମୀକି ରାମ-ଚରିତରେ ରାମଙ୍କୁ ପରମେଶ୍ୱର ରୂପେ ସୃଷ୍ଟି କରିଥିଲେ । ବେଦବ୍ୟାସ ତାଙ୍କର ମହାକାବ୍ୟ ଭାଗବତରେ ନନ୍ଦନନ୍ଦନଙ୍କୁ ଶ୍ରୀକୃଷ୍ଣ ଭଗବାନ ବୋଲି ନିଃସନ୍ଦେହରେ ପ୍ରକାଶ କରି ଦେଇଛନ୍ତି; କିନ୍ତୁ ନାରୀ ଆଜି ପର୍ଯ୍ୟନ୍ତ ଏ ତାପସମଣ୍ଡଳୀଙ୍କୁ ଆବିଷ୍କାର କରିପାରିନାହିଁ । ସେ ମନେ ମନେ ବିଶ୍ୱାସ କରିରହିଛି ଯେ ପୁରାଣ କଥାଗୁଡ଼ିକ କେବଳ ସ୍ୱର୍ଗରାଜ୍ୟର ଦେବତାମାନେ ହିଁ ସୃଷ୍ଟିକରି ମର୍ତ୍ତ୍ୟରାଜ୍ୟକୁ ପଠାଇଦେଇଛନ୍ତି । ନାରୀ ଆଜି ତାର ଦିବ୍ୟଦୃଷ୍ଟିରେ ଦେଖିପାରିଛି—ପୁରୁଷଙ୍କୁ ମହାଶକ୍ତି ସ୍ରଷ୍ଟାରୂପେ ଏବଂ ପରମପିତାରୂପେ । ସେଇ ପରମପିତାଙ୍କ ତର୍ଜନୀ ସଙ୍କେତରେ ସେ ଦେଖିବାକୁ ପାଉଛି, ଊର୍ଦ୍ଧ୍ୱତନ ସପ୍ତଲୋକର ପଥ । ସେ ବୁଝି-ପାରୁଛି, ଏ ମାର୍ଗର ଦ୍ୱାର ସର୍ବଜନ ଏବଂ ସର୍ବକ୍ଷଣ ପାଇଁ ଉନ୍ମୁକ୍ତ । ଏ ମାର୍ଗ ଏତେ ଦୁର୍ଗମ ଯେ ଏପଥରେ ଗତିକରିବା ପାଇଁ ପ୍ରତିଦ୍ୱନ୍ଦ୍ୱିତା ଘଟେନାହିଁ । ପଥିକର ଗତିଶକ୍ତି ହିଁ ପଥିକକୁ ପହଞ୍ଚାଇ ଦିଏ ଊର୍ଦ୍ଧ୍ୱତନ ଦେଶରେ । ସେଇ ପରମପିତା ଆଦେଶ ଦିଅନ୍ତି, ନାରୀ ସେ ଆଦେଶକୁ ଶିରୋଧାର୍ଯ୍ୟ କରି ତା' ଜୀବନର ପଥ ନିର୍ଦ୍ଦେଶ କରୁ । ପିତାଙ୍କ ଆଦେଶ ବିନା ଏହି ମୂଢ଼ ବାଳିକାଟି ପଦେ ମଧ୍ୟ ଅଗ୍ରସର ହୋଇପାରିବ ନାହିଁ । ଏଇ ଯେ ଅଳ୍ପ ସମୟ ପୂର୍ବରୁ ସାହିତ୍ୟ ସଂସଦର ସମ୍ପାଦକ ଭକ୍ତ ସଂସଦର କାର୍ଯ୍ୟ କରିବାକୁ ଆଦେଶ ଦେଇଛନ୍ତି । ପିତା ଯେଉଁପରି କନ୍ୟାକୁ ଆଦେଶ ଦିଏ, ଅବିକଳ ସେଇପରି ଆଦେଶ ଆସିଛି । ସେ ଆଦେଶ ପାଳନ କରିବାକୁ ସେ ହିଁ ଦେବେ ମୋତେ ଶକ୍ତି......"

ବାଦ୍ୟକାରେ ଆସି ଆଗନ୍ତୁକମାନଙ୍କୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ନାଟକ ଦେଖି ଆସିବା ପାଇଁ ଅନୁରୋଧ ମଧ୍ୟ କରିଗଲେ ।

ମଦନ ମହାପାତ୍ରେ ମଇନିଙ୍କ ହାତ ଧରି ବାହାରି ପଡ଼ିଲେ ଘର ଆଡ଼କୁ । ନାଟକଘରର ଦୁଆର ମୁହଁରେ ହୋଇଛନ୍ତି, ମହାପାତ୍ରେ ତାଙ୍କର ଅଭ୍ୟାସ ପ୍ରକାରେ ହସି ହସି କହିଲେ, "କଅଣ କହିଲ ମଇନେ, ମାଇକିନିଆଟା ?"

ମଦନ ସ୍ତ୍ରୀଙ୍କି ଘୁଞ୍ଚିଯାଇ କହିଲେ, "ତମର ଏ ବିଦ୍ରୂପ ହସଟା ମତେ ଭଲ ଲାଗେନାହିଁ ମଇନେ । ଯାହା ସେ କହିଲେ, ମତେ ଭଲ ଲାଗିଲା । ଏତେ କଥା

ତ କହିଦେଇ ଯାଉଛ, ଇମିତ ନାଟକମଞ୍ଚ ଉପରେ ଠିଆହୋଇ ସ୍ୱରକ୍ଷେପ କହିଦେବନି, ଦେଖିବ ।"

ମହାପାତ୍ରେ ଆଉ ଭୁହାଏ ହସ ହସି କହିଲେ, "ମୁଁ କାହିଁକି ଇମିତ କଥା କହିବି ? ହାଡ଼ସାହିର ନଟିଆ ମାଆକୁ ଡ଼ାକଦେଲେ, ସିଏବି ଇମିତ କେତେ କଥା କହିଯିବ ।"

ମହାପାତ୍ରଙ୍କ ଆଗରେ ଯାଉଥିଲେ ଲୋକନାଥ ଗୋସ୍ୱାମୀ, ସେ ଆଉ ଟିକିଏ ପଛକୁ ହଟିଆସି କହିଲେ, "ମାଇକିନା ଜାତିଟାକୁ ଯଦି ବକର ବକର ହେବାକୁ ଛାଡ଼ି ଦେଇଥିବ କହି ତ ଯାଉଥିବେ । କେତେ ସ୍ତ୍ରୀ ଇମିତ କଥା କହୁଚନ୍ତି । ଆପଣ ଯାହା ଯାହା କହିଲେ ମୋ ମନକୁ ମାନିଗଲା । ଝାମ୍ପୁରି ହାଡ଼ିଆଣୀ ମାଛ ବିକୁ ବିକୁ ଯେତେ କଥା କହୁଚି, ଢଗ ବୋଲୁଚି, ଏସବୁ ତା ତୁଳନାରେ କିଛି ନୁହେଁ । ଏ ନାଟକ ଲେଖା କଅଣ ମୁଁ ତ କିଛି ବୁଝିପାରିଲି ନ ଆଜ୍ଞା ।"

ମହାପାତ୍ରେ ହସି ହସି ଅଗ୍ରସର ହେଉଥିଲେ ଘର ଆଡ଼କୁ ।

× × × ×

ସେ ଦିନର ଷ୍ଟେଜ୍ ରିହାର୍ସାଲ ପରେ ସୁରମାଷ୍ଟ୍ରେ ଆଉ ବାଦ୍ୟକାରେ ଚିନ୍ତାକରି ସ୍ଥିର କରିଥିଲେ, ଆଉ ସ୍ୱରନ୍ଦନ ନାଟକ ଅଭିନୟ ଘୁଞ୍ଚାଇଦେବାକୁ । କାରଣ ସବୁ ଅଭିନେତା ଏକାଠି ହୋଇ ପରସ୍ପର ସଂଳାପ ଅଳ୍ପ କେତେ ଥର ମାତ୍ର କରିବା ହେତୁ ସାମଞ୍ଜସ୍ୟ ବୋଧହେଉ ନ ଥିଲା । ପୁଣି ମୁଖସ୍ଥର ଅଭାବ ମଧ୍ୟ ରହିଥିଲା । ଏଇ ସମସ୍ତ କାରଣରୁ ସପ୍ତାହ ଗୋଟାଏ ଘୁଞ୍ଚେଇ ଦେବାକୁ ସ୍ଥିର ହୋଇଥିଲା । ଗତ ପାହାନ୍ତାରୁ ନିଦ ଭାଙ୍ଗିବା ଅବସରରେ, ବାଦ୍ୟକାର ଆଉ ସୁରମାଷ୍ଟ୍ରେ ସେଇ କଥା ନେଇ ଆଲୋଚନା କରୁଥିଲେ ।

ଅଗଣା ଘର ଉପର ରେଲିଂ ଉପରେ ବସି ବଣିପକ୍ଷୀଗୁଡ଼ାକ ଅକାରଣରେ କଳହ ଆରମ୍ଭ କରିବା ହାରୁ ନିଦ ଭାଙ୍ଗିଗଲା ସ୍ୱର୍ଣ୍ଣର । ନିଦ ଭାଙ୍ଗ ଭାଙ୍ଗ ପିଲୁଙ୍କେ ଯିମିତି ଚଞ୍ଚଳ ହୋଇଉଠି ବସେ, ସେଦିନ ସିମିତି ସେ ଆଜି ଉଠିପଡ଼ି ବସିଲାନାହିଁ । ବିଛଣାରେ ପଡ଼ିରହି ଭାବୁଥିଲା ରାତିର କଥା । କେତେ ଲୋକ ଏକାଠି ହୋଇଥିଲେ ନାଟକ ଘରଟାରେ । ସେମାନଙ୍କ ଭିତରୁ କାହାକୁ ହେଲେ ସେ କେବେ ଦେଖିନାହିଁ କି ଚିହ୍ନିନାହିଁ । କଅଣ କହିଲା ସେ ? ଆହା, କାହିଁକି ସେ କହିବାକୁ ଗଲା, କଅଣ ବା ଜାଣିଛି ସେ ? କେହି ଯଦି ତାକୁ ମନାକରି ରଖିଦେଇ ଥାନ୍ତା ! କେଡ଼େ ଖୁସିରେ ସେ ରହିଯାଇଥାନ୍ତା । ମନେପଡ଼ିଗଲା ମାଉଁଙ୍କ କଥା । ସେଇ ଝିଅଟା ଆଜ ସଭାରେ ଠିଆହୋଇ କଥା କହିପାରିଲା ? ତାହେଲେ ଦି' ଧାର ଲୁହ ବହିଗଲା ସ୍ୱର୍ଣ୍ଣର ଦୁଇ ଆଖିରୁ । ତା'ର ମନେପଡ଼ିଲା, ସେଦିନ ହେବ ଡ୍ରେସ୍ ରିହାର୍ସଲ । ତା' ପରଦିନ ନାଟକ ଅଭିନୟ । ଯେଉଁ ଲୋକଗୁଡ଼ିକୁ ସେ ଦେଖିଆସିଛି, ସେଇମାନେ ଆସି ବସିବେ ଦର୍ଶକ ଆସନରେ । କଅଣ ସେ କହିବ କାଲି । ଲୋକଙ୍କୁ ସେ କଥା କଅଣ ଭଲ ଲାଗିଥିବ । ନାଟକଘର କଥା ! କେତେ ଟଙ୍କାପଇସା ଖରଚ ହୋଇଯାଉଛି—

ପରମାନନ୍ଦ ଆସି ବସିଲେ ସ୍ୱର୍ଣ୍ଣର ପିଠି ପାଖକୁ । ଗଭୀର ସ୍ନେହରେ ପତ୍ନୀର ପିଠିରେ ମଥାରେ ହାତ ବୁଲେଇ ଆଣିଲେ ସେ । ସ୍ୱର୍ଣ୍ଣ ତାର ମଥା ଘୁଞ୍ଚେଇ ନେଇ ପରମାନନ୍ଦଙ୍କ ଗୋଡ଼ ଉପରେ ରଖି ରଖି କରୁଣ ସ୍ୱରରେ କ୍ରନ୍ଦନକରି ଉଠି କହିଲା, "ଶ୍ୱଶୁର ଆଶ୍ରୟହୀନାକୁ ବଧୂରୂପେ ବରଣକରି ଆଣିଥିଲେ । ଆଜି ଗୋଟିଏ ଦିନ ଚାଲିଯାଇଥିଲେ, କେଉଁଠାରୁ ଯାଇ କେଉଁଠି ସେ ପଡ଼ିଥାନ୍ତା ? ପିତୃ-ମାତୃହୀନାର କି ସମ୍ବଳ ଥିଲା ତୁମର ସେବିକା ହେବାକୁ । କି ଶକ୍ତି ଥିଲା ତା'ର ଜନସମାଜକୁ ସମ୍ବୋଧନ କରି କହିବାପାଇଁ —"

ପରମାନନ୍ଦ ସ୍ୱର୍ଣ୍ଣକୁ ଉଠେଇ ନେଇ କହିଲେ, "ମନୁଷ୍ୟକୁ ପିତାମାତା ସିନା ଜନ୍ମ ଦିଅନ୍ତି, କିନ୍ତୁ ଶକ୍ତିସଞ୍ଚୟ କରେ ସେ ନିଜେ । ବର୍ତ୍ତମାନ ମୁଁ ବୁଝିପାରୁଛି, ତୁମେ ତୁମକୁ ଜାଣି ଥରେ ମଧ୍ୟ ଜାଣି-ପାରିଛ । ତୁମକୁ ମଧ୍ୟ ମୁଁ ବୁଝିପାରୁଛି ଶୁକଦେବ ! ଏଇ ବୁଝିପାରିବା କଅଣ କମ୍ ସୌଭାଗ୍ୟର କଥା !

ସମସ୍ତେ ସମସ୍ତେ ଏ କାର୍ଯ୍ୟରେ ହାନ୍ଦିକ ହାତଦେଲେ ବୋଲି ତୁମେ ଯେ ବ୍ୟସ୍ତ ହୋଇଯାଉଛ, ତାହା ମୁଁ ଜାଣୁଛି; ତେବେ ମଧ୍ୟ ତୁମକୁ ଉଚ୍ଚ ଆସନରେ ବସେଇ ଦେବାକୁ ହିଁ ମୋର ଇଚ୍ଛା । ଏ କଥା ମୁଁ ତ ତୁମକୁ ସବୁବେଳେ କହିଆସୁଛି । ପୁଣି ଶୁକ ମଧ୍ୟ ସେଇ କଥା ଲେଖୁଛି । ମୋର ମନେପଡ଼ୁଛି, ସେ ଅନେକ ଦିନ ଆଗର କଥା । ଦେଖିଥିଲି "ଧ୍ରୁବ ତପସ୍ୟା" । କେତେ ବାଧା ଅତିକ୍ରମ କରି ଧ୍ରୁବ ମାଆଙ୍କୁ ଛାଡ଼ି, ଅରଣ୍ୟ ପଥରେ ଖୋଜି ହେଲା ଚିଦାନନ୍ଦ ଭଗବାନଙ୍କୁ । ମୁଁ ମନେ ମନେ ଚିନ୍ତା କରୁଛି, ଭଗବାନ ତୁମକୁ ଶକ୍ତି ଦିଅନ୍ତୁ, ତୁମେ ସାଂସାରିକ ସମସ୍ତ ବାଧା ଅତିକ୍ରମ କରି ଧ୍ରୁବ ପରି କେତେଗୁଡ଼ିଏ ଚରିତ୍ର ସୃଷ୍ଟି କରି ଦେଇପାରିବ । ଦେଖୁଛି, ଧ୍ରୁବଙ୍କୁ ସୃଷ୍ଟି କରି ସ୍ରଷ୍ଟା ରହିଯାଇଛନ୍ତି ଅଦୃଶ୍ୟ ହୋଇ । କି ସୁନ୍ଦର ଗୂଢ଼ତତ୍ତ୍ୱ ଏ ଭିତରେ ନିହିତ ଅଛି !"

ପରମାନନ୍ଦଙ୍କ କଥା ଶୁଣି ସ୍ୱର୍ଣ୍ଣର ଆଖି ମୁଦି ହୋଇଗଲା ଭାବାବେଶରେ । ମୁହଁ ଫେରେଇ ନେଇ ଆଖି ପୋଛିଦେଲା ହାତ ପାପୁଲିରେ । ମଥା ତାର ନତ ହୋଇଗଲା ଅଦୃଶ୍ୟ ଦେବତାଙ୍କ ପାଦତଳେ ।

ସେ ପିମିତି ସ୍ୱାମୀଙ୍କ ପାଦ ପାଖରେ ଶୋଇରହି ଆବେଗଜଡ଼ିତ କଣ୍ଠରେ କହିଲା, "ଯେଉଁ ଧ୍ରୁବଙ୍କୁ ତୁମେ ଗମ୍ଭୀରଭାବରେ ଭଲପାଅ, ମୁଁ ସେ ସ୍ତବଟି ଲେଖିଛି, କିନ୍ତୁ ଏ ମହାଶୂନ୍ୟ ପଥ ଅତିକ୍ରମ କରି ମୁଁ ସେ ଧ୍ରୁବ ନକ୍ଷତ୍ର ପାଖକୁ ଯାଇପାରୁନାହିଁ । ତୁମେ ହିଁ ମତେ ପଥ ଦେଖାଇ ଦିଅ ପ୍ରଭୁ ସୁମନ ମୋର । ତୁମେ ଯେ ମତେ କବିତ୍ୱ ଶକ୍ତି ଦେଇଛ—"

ଧ୍ରୁବର ସ୍ତବ ତୁମେ ଲେଖିପାରିଛ ଶୁକବୋଉ ! ତୁମର ସେ କବିତା ମୁଁ ନିଶ୍ଚୟ ଶୁଣିବି । କରିବାଲ ହେତେବାକୁ ଜ୍ୱର ହୋଇଛି । ଆଜ ସେ କମିତି ଥିବ ବୋଲି ଦେଖିପିବାକୁ ମନ ଉଦ୍‌ବିଗ୍ନ ଥିଲା । ସେ ଆଉ ଆଜ ଆଉ ପିବନାହିଁ । ଆଜ ତୁହେଁ ସ୍ନାନ କରି ଆସି ଶୁଚିଶୁଦ୍ଧ ହୋଇ ବସିବା; ତୁମେ ଧ୍ରୁବସ୍ତବ ପଢ଼ିବ, ମୁଁ ଶୁଣିବି ।

ସ୍ନାନ କରି ଆସି ଚୁଲିପାଖରେ ବସିଥିଲା ସ୍ୱର୍ଣ୍ଣ । ବଶୁ ଯାଇଛି ବଜାର କରି । ଚୁଲି ଜାଳି ଦେଇଯାଇଛି । କବିତା ଶୁଣିବେ ବୋଲି ସିନା ପରମାନନ୍ଦ କହିଥିଲେ, କିନ୍ତୁ ଥରକୁ ଥର ରୋଗୀଙ୍କ ଲୋକ ଆସି ପଥ୍ୟ ପାଚନର ପରାମର୍ଶ ନେଉଥିବାରୁ ସକାଳ ଦଶଟା ପର୍ଯ୍ୟନ୍ତ ସମୟ ପାଇ ନ ଥିଲେ । ସ୍ୱର୍ଣ୍ଣ ଚୁଲି ପାଖରେ ବସି କବିତା ସଂଶୋଧନ କରୁଥିଲା । ପରମାନନ୍ଦ ଦୁଆର ମୁହଁକୁ ଆସି କହିଲେ, ଆସ ଶୁକବୋଉ ; ମୋ ମନ ସେଇ ସ୍ତବ ଭିତରେ ରହିଛି । ସ୍ୱର୍ଣ୍ଣ କହିଲା– ତୁମ ମନ ସିନା କବିତା ଶୁଣିବାରେ ରହିଛି ମୋ ମନ– ଭୟରେ କାତର ହେବାକୁ ଲାଗିଲାଣି ।

ପରମାନନ୍ଦ କହିଲେ, ତୁମେ ବାରଣ୍ଡାରେ ବସି କବିତା ପଢ଼ିବ, ମୁଁ ଘରଭିତରେ ଶୋଇ ଶୁଣିବି । କହୁ କହୁ ସେ ଖଟ ଉପରେ ଶୋଇ କହିଲେ, ଆରମ୍ଭ କର, ଏଠୁ ମୁଁ ଶୁଣୁଛି ।

ସ୍ୱର୍ଣ୍ଣ ଆରମ୍ଭ କଲା ସ୍ତବ—

ଦ୍ରୁତ ପଦରେ ଚାଲିଛି ଧ୍ରୁବ
କୁଟୀର ଦ୍ୱାର ଛାଡ଼ି,
ବତାସ ବହେ ପ୍ରବଳ ବେଗେ
ଶୁଭୁଛି ଘଡ଼ଘଡ଼ି,
କାତର କଣ୍ଠେ ଡାକେ ଭକତ
କାହିଁ ରହିଛ ଜଗତ ନାଥ ।

ଶୁଭୁଛି ତବ ଚରଣ ଧ୍ୱନି
ଦେଖୁ ନି ତବ ଛବି,
ତୁମରି ନାମ ଗାୟନ କରି
ହୃଦୟ ଯାଏ ଡୁବି ।

ବରଷେ ଜଳ ପ୍ରବଳ ଧାରେ
ଘନକେ ଧରା ବଜ୍ରନାଦରେ
ଚାଲିଛି ଧ୍ରୁବ ଅରଣ୍ୟ ପଥେ
ସଂଶୟ ନାହିଁ ମନେ,
ଗରଜେ ମେଘ କମ୍ପେ ଧରଣୀ
ବିଜୁଳି ଝଲସେ ଘନେ ଘନେ ।

କରସେ କଳ ମୁଖକାନ୍ତିରୁ,
ଅକାଡ଼ ହୁଏ ଧ୍ରୁବ ପଥାନ୍ତରେ,
ଉନ୍ମାଦ ବାଆ ଯାଉଛି ବହି
ଦୋହଲେ ବନ ଦେଶ,
ଆକେବେ ହବା ଏ ଉକ୍ତଲତା
କରନ୍ତି ଭୂମି ସ୍ପର୍ଶ ।

ଧ୍ରୁବର କେଶ ଗଣିରୁ ଜଳ
ପଡ଼ୁଛି ଝରି ଥରକୁ ଥର
ଭକ୍ତ ବାଳକ କରୁଛି ଗତି
ଭୟ ଭାବନା ନାହିଁ
ସଞ୍ଚିତ ତାର ଦୁଃଖର କଥା
ଯାଉଛି କହି କହି ।

କହିଲା ଧ୍ରୁବ କରୁଣ ସ୍ୱରେ
ମାଆଙ୍କୁ ଛାଡ଼ି ଆସିଛି ଦୂରେ,
ପଛକୁ ଫେରି ଚାହିଁବିନାହିଁ
ଏ ଋଷି କେବେ ଆଉ
ବର୍ଣ୍ଣନ କଥା ଉତ୍ତମ ବୃତ୍ତି
ଶରଣ ଥାଉ ଥାଉ ।

ସୁରୁଚି ମାଆ ଅଛନ୍ତି କହି
ତୁମେ ହିଁ ତିନ ଭୁବନ ସ୍ୱାମୀ
ହୃଦୟେ ଅଛ ହୃଦୟନାଥ
ରହିଛ ପୁଣି ଦୂରେ,
ଭକତ ଡାକ ଶୁଣୁଛ ପ୍ରଭୁ
ଡାକିଲେ ଭକ୍ତିଭରେ ।

ପିତାଙ୍କ ପାଖେ ଥିଲି ମୁଁ ଯାଇ
ରାଜ-ଆସନେ ବସିବା ପାଇଁ
ସମାତା ଆସି ସିଂହାସନରୁ
ଆଣିଲେ ମୋତେ ଟାଣି,
ଭର୍ତ୍ସନା କରି କହିଲେ ଯେତେ
କଠିନ କଟୁବାଣୀ ।

ସେ ଅପମାନେ ପରାଣ ମୋର
ଦୁଃଖ ଭାରରେ ହେଲା ଜର୍ଜର
ପିତାଙ୍କ ପାଶୁ କନାରେ ମୋତେ
ଆଣିଲେ ବାହୁ ଧରି ।
ଅଭାଗା ବୋଲି କହିଲେ ମୋତେ
ଭର୍ତ୍ସନା କେତେ କରି ।
ଦେଖି ନାହିଁ ମୁଁ ରୂପ ତୁମର
ଶୁଣି ନ କେବେ ତୁମର ସ୍ୱର
ସୁରୁଚି ମାଆ କହିଛି ଯାହା
ରହିଛି ହୃଦେ ଲେଖି,
ଜନ୍ମ-ଜୀବନ କରିବ ଧନ୍ୟ
ତୁମକୁ ଥରେ ଦେଖି ।
ଭକତମଣି ସୁନୀତି ମାତା
କହିଅଛନ୍ତି ତୁମର କଥା
ହୃଦୟମୁନା-କୂଳରେ ରହି
ବଜାଉଅଛ ବଂଶୀ
ଡାକିଲେ ଭକ୍ତ ଦେଉଛ ଦେଖା
ମୃଦୁ ମଧୁର ହସି ।
ଗଳପ ଛଳେ ସୁନୀତି-ମାତା
କହିଛି ତବ ଭାରତ ଗାଥା
ଏ ପଥେ ଆଜି ସେ କଥା ମନେ
କରୁଛି ସୁମରଣ,
ପରଶ ତବ ଲଭିବା ପାଇ
ଶିହରେ ମନ ପ୍ରାଣ ।
ଭାବ ଆବେଶେ ଜନନୀ ମୋର
କହିଛି ଯେତେ କଥା ତୁମର
ତୁମରି ପଦ ଅଙ୍ଗୁଷ୍ଠୁ ଗଙ୍ଗା
ଯାଇ ଅଛନ୍ତି ବହି
ତବ ଗର୍ଜନା ଉଠିଲେ ସୃଷ୍ଟି
ପ୍ରଳୟ ଯାଏ ହୋଇ ।
ସୁନୀତି ମାଆ କହିଛି ମୋତେ,
ବ୍ୟାପୀ ରହିଛ ତୁମେ ଜଗତେ,
ସୁରଗଣଙ୍କୁ କରିଛ ସୃଷ୍ଟି
ଆପଣା ଶକ୍ତି ଦେଇ
ଯଥା ସ୍ଥାନରେ ଗ୍ରହଗଣଙ୍କୁ
ରଖିଛ ତୁମେ ନେଇ ।

ମାନବ ପ୍ରାଣେ କରିଛ ବାସ
ଅନ୍ତରଯାମୀ ହୃଦୟ-ଈଶ,
ତୁମ ବିହୁନେ ତିନ ଭୁବନ
ହୁଏ ଯେ ଅନ୍ଧକାର,
ଆପଣା ହାତେ ଭକ୍ତର ତୁମେ
ପୋଛାଅ ଦୁଃଖ-ଭାର ।

ବିଦ୍ୱେଷ ଥିଲେ ବିମାତା ମୋର
ଦେଖାଇଦେଲ ସ୍ୱରଗ ଦ୍ୱାର
ରାଜ-ଆସନ ଛାଡ଼ି ଆସିଛି
ଏକାନ୍ତ ଦୃଢ଼ ଚିତ୍ତେ,
ଆପଣା ହାତେ ଆକାଶ ଅଙ୍କେ
ବସାଇ ଦିଅ ମତେ ।

ଅଜ୍ଞମା ଶିଶୁ ଜାଣେ ନା ସ୍ତବ
ରଚିବ କେମନ୍ତେ ବନ୍ଦନା ତବ
କେଉଁ ମନ୍ତ୍ରରେ ତୁମକୁ ପ୍ରଭୁ
କରିବ ଆବାହନ,
ଛନ୍ଦ ବନ୍ଧନ କଳା କୌଶଳ
କରି ନ ଅଧ୍ୟୟନ ।

ଅନ୍ତରଯାମୀ ତୁମେ ମୋ ପ୍ରଭୁ
ଅନ୍ତର କଥା ଜାଣିଛ ସବୁ,
ଏ ମହା ମୋହ ମାଆକୁ ଛାଡ଼ି
ଆସିଛି ଆଜ ଧାଇଁ
ବିଶ୍ୱ-ସଂସାର ଦିଶେ ଅନ୍ଧାର
ତିଳେ ମୋ ଭୟ ନାହିଁ ।

ଶିଶୁକାଳରୁ ସୁନୀତି ମାତା
ଶୁଣାଇଥିଲେ ତୁମର ଗୀତା
ମହିମାମୟ ଅରୂପ ରୂପ
ହେ ମୋର ଜ୍ୟୋତିର୍ମୟ;
ତୁମର ନାମ ସ୍ମରଣ କଲେ
ନ ଥାଏ ମନେ ଭୟ ।

ଗରଜେ ମେଘ ବରଷେ ଜଳ
ପବନ ବହେ ହୋଇ ଆକୁଳ,
ଚମକେ ବିଦ୍ୟୁ ଦଶ ଦିଗରୁ
ଶିହରି ଉଠେ ଧରା,
କଳନାଦରେ ଗିରି ଶିଖରୁ
ଝରଇ ଜଳଧାରା ।
ଉନ୍ମତ୍ତ ହୋଇ ଦୋହଲେ ତରୁ
କି ଧ୍ୱନି ଶୁଭେ ବନମର୍ମରୁ,
କି ସମାରୋହ ଲାଗିଛି ଆହା
ଆଜି ଏ ବନଦେଶେ,
କାନନଲକ୍ଷ୍ମୀ କରନ୍ତି କ୍ରୀଡ଼ା
ଆନନ୍ଦମୟୀ ବେଶେ ।
ପଥ ଅନ୍ଧାର ଗଲି ସେ ହୋଇ
କେମନ୍ତେ ଗତି କରିବି ସ୍ୱାମୀ ?
ବିଦ୍ୟୁ ଆଲୋକ ଯାଉଛି ଦିଶି
ଯମୁନା ନଦୀ ତୀର
ବୃନ୍ଦାବନୁ ଶୁଭୁଛି ପ୍ରଭୁ
ତୁମର ବଂଶୀସ୍ୱର ।
କି କଣ୍ଠ ହେଲା, ଏ ପଶୁରାଜ
ଆସିଲା କାହୁଁ, ହଜେ ମୋ ଧୈର୍ଯ୍ୟ
ମୁଖମଣ୍ଡଳ ଦେଖି ତାହାର
ଯାଏ ମୋ ପ୍ରାଣ ଥରି,
ଭୟନାଶନ ଆସ ଏଥର
ନିଅ ମୋ ହାତ ଧରି ।
କାହିଁ ଗଲା ସେ କ୍ଷୁଧିତ ସିଂହ
ଏ କି, ଏ ଲୀଳା ହେ ଲୀଳାମୟ !
ଏ ଅଜଗର ତୀର ବେଗରେ
ଆସୁଛି ଧାଇଁ ଦେଖ;
ସ୍ବହୁଁ ସ୍ବହୁଁ ମୁଁ କରି ଦେବ ସେ
ମୋତେ ତାହାର ଭକ୍ଷ୍ୟ ।
ଏ କେଉଁ ମାୟା ରଚୁଛ ପ୍ରଭୁ
ଅଜଗରଟା ନ ଦିଶେ ଆଉ
ଏବେ ସେ ମାୟା ଏବେ ସେ ଛାୟା
ଦେଖାଉଅଛ ଆଣି,
ଏ ଭୟରାଶି ବହନ କେମନ୍ତେ
କରିବ ମୂଢ଼ ପ୍ରାଣୀ ।

ଏଇ ତ ଶୁଭେ ମୋହନବଂଶୀ,
ଏଇ ତ ନୃତ୍ୟ କରୁଛ ହସି;
ଏଇ ତ ତୁମେ କହୁଛ କଥା
ମୁଖକୁ ମୋର ଛୁଇଁ
କହିବ କେତେ ଜୀବନେ ତବ
ଦର୍ଶନ ପାଇନାହିଁ ?
ଶିଶୁ ଭକତ କରେ ବେଦନ
ପ୍ରତ୍ୟକ୍ଷ ହେବେ ଦିଅ ଦର୍ଶନ;
ଅଧମ ଭକ୍ତ ଜାଣେ ନା ତଥା
ମୁଖକୁ ଥିବ ଛୁଇଁ,
ଭକତ ଅଶ୍ରୁ ଆଖିରୁ ତାର
ଅଜସ୍ର ଯିବ ବହି ।
ହେଲଣି ମନ କାମନାଶୂନ୍ୟ
ମାଗିବ ନାହିଁ ଉଚ୍ଚ ଆସନ,
ମାଗିବ ମାତ୍ର ପାଦତଳରୁ
ଗୋଟିଏ ବିନ୍ଦୁ ଧୂଳି
ପରଶି ତବ ଚରଣ ରଜ
ଶିରେ ମୋ ଦେବ ବୋଳି ।
ବାଳକ ଭକ୍ତ ଏ କଥା କହି
ମାଟି ଉପରେ ପଡ଼ିଲା ଶୋଇ
ବଜାଇ ବଂଶୀ ଆସିଲେ କୃଷ୍ଣ
ବସିଲେ ଧ୍ରୁବ ପାଖେ,
ଚେତନା ଲଭି ଚାହିଁଲା ଧ୍ରୁବ
କର-କମଳ ସ୍ପର୍ଶେ ।
ଚାହିଁଲା ଧ୍ରୁବ ନୟନ ଫେରି
ବସିଅଛନ୍ତି ଜୀବନ-ସାଇଁ
ସୋହାଗଭରେ ଆପଣା ଅଙ୍କେ
ମଥାଟି ତାର ରଖି,
ଆବେଗେ ଥରି ବାଳକ ଭକ୍ତ
ମୁଦି ଦେଲା ତା ଆଖି ।
କହିଲେ ପ୍ରଭୁ ମଧୁର ହସି
ମହତ ଇଚ୍ଛା ତୋ ମନେଅଛି
ଆପଣା ତପ ବଳରେ ସ୍ୱୟଂ
ବସିବୁ ଉଚ୍ଚାସନେ,

ଆକାଶ ଅଙ୍କେ ବସନ୍ତିରେ ଯାଇ
'ଧ୍ରୁବନକ୍ଷତ୍ର' ନାମେ ।
ତୋତେ ନେଇ ମୁଁ ଆପଣା ହାତେ
ବସାଇଦେବି ଆକାଶ ଅଙ୍କେ
ମାଟିର ପାପ ଗଗନ ମାର୍ଗେ
ଅଦୃଶ୍ୟ ହୋଇ ରହି ।
ମର୍ତ୍ତ୍ୟରେ ନିତ ଜନମି ଲଭି
ଯିବୁ ତୁ କଥା କହି ।
ଜଗତବାସୀ ତୋ ନାମ ସ୍ମରି
ଲଭିବେ ସିଦ୍ଧି ସାଧନା କରି
ଚିରକାଳ ତୁ ରହିବୁ ବସି
ହୋଇଣ ଜ୍ୟୋତିର୍ମୟ;
ମାନବ ଜାତି ସ୍ମରି ତୋ ଭକ୍ତି
ହେବେରେ ମୃତ୍ୟୁଞ୍ଜୟ ।

କବିତା ପଢ଼ୁ ପଢ଼ୁ ସ୍ୱର୍ଣ୍ଣ ଅନ୍ତର୍ଦ୍ଦୃଷ୍ଟି ଦେଇ ଦେଖୁଥିଲା ଭକ୍ତ ଆଉ ଭଗବାନଙ୍କ ମିଳନ ଦୃଶ୍ୟଟି ।

ପରମାନନ୍ଦ ପଚାରିଲେ, "ଶେଷ ହୋଇଗଲା ଶୁକଦେଇ ! ମୋର ମନେ ହେଉଥିଲା, ପ୍ରତ୍ୟକ୍ଷରେ ଧ୍ରୁବର ମୁହଁରୁ ସେହି କଥା ଶୁଣିଯାଉଛି । ତୁମେ ସତରେ କବିତାଟି ହୃଦୟସ୍ପର୍ଶୀ କରି ଲେଖିଛ । ଧ୍ରୁବ ସ୍ତବ ଶୁଣି ମୋର ଆଶା ବଢ଼ିଯାଉଛି ଶୁକଦେଇ ! କେତେ ବଡ଼ ଭାଗ୍ୟବାନ ଆମେମାନେ ! ଏ କଥା ଭାବିଲେ ମନ ଏବଂ ପ୍ରାଣ ପୁଲକିତ ହୋଇଉଠୁଛି ।"

ସ୍ୱର୍ଣ୍ଣ ହସିଦେଇ କହିଲା, "ସୌଭାଗ୍ୟଟା ଏକାନ୍ତରେ ମୋର । ଶ୍ୱଶୁର ଯଦି ଇଚ୍ଛା କରିଥାନ୍ତେ କେତେ ଧନୀ, ମାନୀ ଘରେ ସମ୍ବନ୍ଧ କରି ବିଦ୍ୟାବତୀ ବୋହୂଟିଏ ଆଣିଥାନ୍ତେ ଘରକୁ ।" ପରମାନନ୍ଦ ଗମ୍ଭୀର ହୋଇଯାଇ କହିଲେ, "କେତେ ଘରେ ଧନୀ ମାନୀ ଘରର ସୁନ୍ଦରୀ ବଧୂ ଦେଖିବାକୁ ମିଳୁଛି, କିନ୍ତୁ ତୁମ ପରି ପ୍ରେମମୟୀ କିଏ ହୋଇପାରୁଛି କହ !"

ଶଶୁ ବାଡ଼ିପାଖ ଆଡ଼ୁ ଆସି କହିଲା, "ବଜାର ଆଡ଼ୁ ଆସିଲାବେଳେ ବାଦ୍ୟକାରଙ୍କୁ ଦେଖିଲି ।

କହୁଛନ୍ତି, ଉପରଓଳକ ଆସିବେ। ଲେଖାଟା ଶେଷ କରି ଦେଇଥିବ ବୋଲି କହିଛନ୍ତି।"

× × ×

ସେଦିନ ସନ୍ଧ୍ୟା ସମୟକୁ ସୁରମାଷ୍ଟ୍ରେ ଆଉ ବାଦ୍ୟକାର ନାଟକର ବିଷୟ ହିଁ ଆଲୋଚନା କରି କରି ଯାଉଥିଲେ ନାଟକ ଘରୁ ସ୍ୱର୍ଣ୍ଣ ପାଖକୁ।

ବାଦ୍ୟକାର କହିଲେ, "ଡ୍ରେସ ରିହାର୍ସାଲଟା ହେଲା ସେ ମୁଁ ଟିକିଏ ଅସ୍ୱାବବୋଧ କରୁଛି। ମୋର ମନେହେଉଛି, ଏଇ ମହାପାତ୍ର ବୁଢ଼ାଙ୍କୁ ମାଆଲକ୍ଷ୍ମୀ ତାଙ୍କର ଶ୍ୱଶୁରଙ୍କ ଛାଞ୍ଚକ ରୂପେ ସୃଷ୍ଟି କରିଛନ୍ତି। ବୁଢ଼ା ଗୋସେଇଁଙ୍କର ପୁରୁଣା କୋଟ, କାମିଜ୍ ଯଦି ଥିବ, ଗୋଟାଏ ଦୁଇଟା ଦୃଶ୍ୟରେ ମହାପାତ୍ରେ ପିନ୍ଧିବେ। ଆଉ ଗୋଟିଏ କଥା ମାଷ୍ଟ୍ରେ! ଆମ ସାହିତ୍ୟ ସଂସଦର ସମ୍ପାଦକ ଆଉ ତାଙ୍କ ଭଣଜାଙ୍କୁ ଆଉ ଟିକିଏ ଶିଖେଇବାକୁ ହେବ। ଦାମ ରଥଙ୍କ ପାର୍ଟଟା ଅବଶ୍ୟ ସମ୍ପାଦକ ଅଭିନୟ କରିଦେବେ। ମୁଁ କଅଣ ଭାବୁଥିଲି କି, କନ୍ଦସୁତର ପାର୍ଟଟା ମୁଁ ନେଇଥାନ୍ତି। ତୁମେ ବରଜୁ ମହାପାତ୍ରଙ୍କ ପାର୍ଟଟା ନିଅ। ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ତାଙ୍କର କଥା ରହିଛି। ମୁଖସ୍ଥ ରଖିବା କଷ୍ଟ-ସହଜ ନୁହେଁ। ଭୁବନେଶ୍ୱର କଲ୍ୟାଣୀର ପାର୍ଟ ନେବ। ଭାରତୀଲାଳର ବକୁଳ ପ୍ରଭାକରର ପାର୍ଟଟି ଭଲ କରୁଛି। ପ୍ରେମ ଅଭିନୟ କରିବା ତ ସହଜ ନୁହେଁ! ହେଲେ ମଧ୍ୟ ସେଇତକ ସେ ଭଲ କରୁଛି।"

ଏତେଗୁଡ଼ିଏ କଥା ଶୁଣି ମଧ୍ୟ ସୁରମାଷ୍ଟ୍ରେ ଉତ୍ତର ନ ଦେବା ଦେଖି ବାଦ୍ୟକାର ପଚାରିଲେ, "କଅଣ ହେଲା, କଥା ଶୁଣି ପାରୁ ନ କି ମାଷ୍ଟ୍ରେ?"

"ତୁମେ କଅଣ ସବୁ କହୁଥିଲ ସତେ ମୁଁ ଶୁଣି ପାରିନାହିଁ ବାଦ୍ୟକାରେ! ଭାବୁଥିଲି, ଆମର ଏ ନାଟକ-କାର୍ଯ୍ୟ କିମିତି ଆଶ୍ଚର୍ଯ୍ୟ ଭାବରେ ଆରମ୍ଭ ହେଲା, ପୁଣି ଭିତରେ ଭିତରେ ସମସ୍ତଙ୍କର ଅନିଚ୍ଛା ସତ୍ତ୍ୱେ ସେ ଗଢ଼ିଉଠୁଛି। ସମୟେ ସମୟେ ମନ ମୋର ଅବସାଦଗ୍ରସ୍ତ ହୋଇଯାଉଛି।" ଏ କଥା କହି ସୁରମାଷ୍ଟ୍ରେ ଚାହିଁଲେ ବାଦ୍ୟକାରଙ୍କୁ।

ବାଦ୍ୟକାର ଟିକିଏ ଅଟ୍ଟହାସ୍ୟକରି କହିଲେ, "ଏ ଜଞ୍ଜାଳ ଘଟି ନ ଥିଲେ ଭଲ ହୋଇଥାନ୍ତା; କିନ୍ତୁ ତୁମେ ହିଁ ତ କହୁଛ; ପଶୁଜାତି ହିଁ ଜଞ୍ଜାଳଶୂନ୍ୟ ହୋଇ ରହନ୍ତି। ଆମେ ଜାଣିଛେ, ସୃଷ୍ଟି ଆରମ୍ଭରୁ ମନୁଷ୍ୟ ହିଁ ଅହରହ ଜଞ୍ଜାଳ ସୃଷ୍ଟିକରି ଆସିଛି। ତାହା ନ ହୋଇଥିଲେ, ପୁରାଣଶାସ୍ତ୍ର ବୋଲି ଯେଉଁସବୁ ଗ୍ରନ୍ଥ ପଢ଼ୁଛେ, ସେ ସବୁ କିଛି ନ ଥାନ୍ତା। କୈକେୟୀ ଯଦି ନିଷ୍ଠୁର ହୋଇ ନ ଥାନ୍ତେ, ରାମାୟଣ କାବ୍ୟ ଲେଖାହୋଇ ପାରି ନ ଥାନ୍ତା। ଯୁଧିଷ୍ଠିର, ଦୁର୍ଯ୍ୟୋଧନ ପ୍ରଭୃତି ଯଦି ଧୀର ସ୍ଥିର ଭାବରେ ସଂସାର କରିଥାନ୍ତେ, ମହାଭାରତ ଗଢ଼ାଯାଇ ନ ଥାନ୍ତା। ମନୁଷ୍ୟ ହିଁ ଦୁର୍ଗମ ପଥରେ ଗତିକରେ। ବର୍ତ୍ତମାନର ଘଟଣା ପାଇଁ ଆମେ ଦାୟୀ ହେଲେ ମଧ୍ୟ ଯାହା ଘଟିବା କଥା, ତାହା ହିଁ ଘଟୁଛି। ଜାଣୁଛି ଏଥିରେ ଅଜସ୍ର ଅର୍ଥବ୍ୟୟ ହେବ।"

ସୁରମାଷ୍ଟ୍ରେ ବାଦ୍ୟକାରଙ୍କୁ ଟିକିଏ ଠେଲିଦେଇ କହିଲେ, "ଚାଲ ବାଦ୍ୟକାରେ, ବିଶୁ ଦୁଆରମୁହଁ ପାଉଞ୍ଛ ଉପରେ ଠିଆହୋଇଛନ୍ତି।"

ବିଶୁ ଧାଇଁଯାଇ ସ୍ୱର୍ଣ୍ଣଙ୍କୁ କହିଲା, "ମା' ମାଷ୍ଟ୍ରେହେରିକା ଆସିଲେଣି; ଯାଉଛି ଚା' ବସେଇଦେବି। ଡ୍ରଇଂମାଷ୍ଟ୍ରଙ୍କ ଘରକୁ ଯାଇଛନ୍ତି, କଅଣ କଥା ହୋଇ ଆସିବେ। ସେମାନେ ସେ ଆଡ଼ୁ ଆସିଲାବେଳକୁ ମୋର ଚା' ହୋଇଯାଇଥିବ। ଆଜି ଆଉ ଗୋଟେ ନୂଆ ଗୀତ କରିଦେଇଥିବ।" ସ୍ୱର୍ଣ୍ଣ କହିଲା, "ଲୀଳାମୟଙ୍କର ଇଚ୍ଛା ହେଲେ ସିନା ଗୀତ ଲେଖିବାକୁ ଆଦେଶ ଦେବେ!" ବିଶୁ ବାଧାଦେଇ କହିଲା, "ନାହିଁ ହେ ମାଆ, ସିମିତ ହେଉ ସ୍ୱର ପଦ ଲେଖିଦିଅ। ତମର ସବୁ ଗୀତ ମତେ ଭଲଲାଗୁଛି। ଲେଖିଦିଅ। ମୁଁ ଯାଉଛି। ଚା' ପାଣିଟା ବସେଇଦେବି।"

ବିଶୁ ପାଖରୁ ଚାଲିଯିବା ପରେ, ସ୍ୱର୍ଣ୍ଣର ମନପ୍ରାଣ ପୁଲକିତ ହୋଇଉଠିଲା ଗୋଟାଏ ଅବ୍ୟକ୍ତ ଆନନ୍ଦର ଅନୁଭୂତିରେ। ସେ ମଥାଟେକି ଚାହିଁଲା ଆକାଶ

ଆଡ଼କୁ । ତାଙ୍କ ମନେହେଲା, ଧ୍ରୁବ ଦୂର ଗଗନରେ ବସି ସ୍ନିଗ୍ଧଗମ୍ଭୀର ଦୃଷ୍ଟିରେ ଚାହିଁଛନ୍ତି ତାହାର ଆଡ଼କୁ ।

ଏତିକିବେଳେ ବସ୍ତୁକୁ ଠେଲି ଠେଲି ଭିତରକୁ ଆସିଲେ ବାଦ୍ୟକାରେ । ସ୍ୱର୍ଣ୍ଣ ଚଞ୍ଚଳ ପଦରେ ବାଦ୍ୟକାରଙ୍କ ପାଖକୁ ଯାଇ କହିଲା, "ଆପଣଙ୍କ ଆଶୀର୍ବାଦରୁ ଧ୍ରୁବକୁ ଦେଖିଲି । ଏଇ ହେଉଥିବା ଆନନ୍ଦ ମୁଁ ଆଜି ବ୍ୟକ୍ତ କରିପାରୁନାହିଁ । ଯେଉଁଠି *ମାଟି ହୋଇ ପଡ଼ିଥିଲି, ଆଜି ତୁମେ ଆସି ସେହି ମାଟି* ଉପରେ ମନ୍ଦାକିନୀ ସିଞ୍ଚି ଜୀବନ ଦେଇଛନ୍ତି । ଏ ଯେଉଁ ଭକ୍ତିନିର୍ଝର ହୃଦୟ କନ୍ଦରରୁ ଝରିପଡ଼ୁଛି, ଏ ଅନୁଭୂତି ମୁଁ ପ୍ରକାଶ କରିପାରୁନାହିଁ । ଜୀବନର ଦିନ ଶେଷ ହୋଇଯିବ, କିନ୍ତୁ ମୋର ଏ କଥା ଶେଷ ହେବନାହିଁ । ଧ୍ରୁବର ଭକ୍ତି; ମୋର ବିଶ୍ୱାସ ମୂର୍ତ୍ତିମନ୍ତ ହୋଇ ବସିଯାଇଛନ୍ତି ମୋର ଏ ହୃଦୟ-ପଦ୍ମ ଭିତରେ ।"

ବାଦ୍ୟକାର ଟେବୁଲ ଉପରେ ରଖାହୋଇଥିବା ଲଣ୍ଠନର ଆଲୋକରେ ଦେଖିଲେ, ସ୍ୱର୍ଣ୍ଣ ଭାବବିହ୍ୱଳ ହୋଇଉଠୁଛି । ସେ ଶାନ୍ତ ସହଜ ଭାବରେ କହିଲେ, "'ଧ୍ରୁବ ନାଟକ' ଆଜି ଶେଷକରି ଦେଇଛ ବୋଧହୁଏ । ସେଇଥିପାଇଁ ଆନନ୍ଦର ସୀମା ନାହିଁ ମାଆ ! ତମେ ଆଗ ବସିପଡ଼ ! ତା ପରେ ଆମେ 'ଧ୍ରୁବ' ସମ୍ବନ୍ଧରେ ଆଲୋଚନା କରିବା । ଏଇକ୍ଷଣି ମାଷ୍ଟ୍ରେ ଆସିବେ ।"

ବାଦ୍ୟକାରଙ୍କ କହିବା ଶେଷ ହେବା ଆଗରୁ ସୁରମାଷ୍ଟ୍ରେ ସେପାଖ ବାରଣ୍ଡା ଆଡ଼ୁ କହିବାକୁ ଲାଗିଲେ, "ଆମର ଆଲୋଚନା କରାଯାଇଥିଲା 'ସାଗର ତୀରରେ' ନାଟକର 'ଆଶ୍ରୟ ଦେଇଛ ପଦତଳେ ତବ ଆଶ୍ରୟ ଦେଇଛ ଈଶ୍ୱର', କବିତାଟିକି ଗାଇବା ।"

ବାଦ୍ୟକାର ସ୍ୱର୍ଣ୍ଣର ଭାବାବେଶଟା କଟେଇଦେବା ଉଦ୍ଦେଶ୍ୟରେ କହିଲେ, "ମାଆଙ୍କର 'ଧ୍ରୁବ' ନାଟକ ଆଜି ଶେଷ ହୋଇଗଲା; ସେଥିପାଇଁ ଆଜି ସେ ସଂସାରର ଦୁଃଖସୁଖ ସବୁ ଭୁଲିଯାଇଛନ୍ତି ।"

ସୁରମାଷ୍ଟ୍ରେ ତାଙ୍କ ଦେହ ଉପର ଶାଲଟାକୁ ଭଲକରି ଘୋଡ଼େଇ ହୋଇପଡ଼ି ସବୁଦିନ ପରି ଖମ୍ବକୁ ଆଉଜି ବସିଗଲେ । ହସହସ [illegible] ସୁନ୍ଦର ମୁଖମଣ୍ଡଳ । ସେ [illegible] କହିଲେ, "କବିତା ଗୋଟିଏ ସୁନ୍ଦର [illegible] କବିମାନଙ୍କର ଇମିତି ଭାବ ଆବେଶ ଆସେ । ଏଇ ଆବେଶ ହିଁ ତ କବିର ଭାବନାକୁ ରସସିକ୍ତ କରିଦିଏ । ଭକ୍ତ ଯିଏ, କବି ସେ ହିଁ । ପୁଣି ଭକ୍ତ ହିଁ ଭଗବାନ୍ । ଭଗବାନଙ୍କୁ ମାଆ ନୂଆ ରୂପରେ ସୃଷ୍ଟିକରିଛନ୍ତି । ଧ୍ରୁବର ଭକ୍ତି ଆଉ ମାଆଙ୍କର ଭକ୍ତି ଏକାଠି ହୋଇ *ବସି ପରଂବ୍ରହ୍ମଙ୍କ ସ୍ତବ ରଚୁଛନ୍ତି । ଏଇ ଅଭି*ବିଶ୍ୱାସରେ ହିଁ ମନୁଷ୍ୟ ଆପଣାକୁ ଭୁଲିଯାଏ । ଆପଣ ହିଁ ସେଦିନ କହୁଥିଲେ, ମନୁଷ୍ୟର ପ୍ରେରଣାରେ ମନୁଷ୍ୟ ଯାହା ଯେତେ ମହତ୍ତ୍ୱ କାର୍ଯ୍ୟ କରିଆସିଛି । ଧ୍ରୁବ ମଧ୍ୟ ଜଣେ ମାନବଶିଶୁ !"

ସ୍ୱର୍ଣ୍ଣ ହସିଦେଇ କହିଲା, "ଭାବବିହ୍ୱଳ ହୋଇ ଭାବିଯାଉଥିଲି ଧ୍ରୁବ ଆସି ମୋ ପାଖରେ ବସିଛି ।

ବାଦ୍ୟକାର ହସିଉଠି କହିଲେ, "ମୋ ମାଆ ତ ପିଲାଦିନେ ପିଲାଖେଳି ଖେଳି ନ ଥିଲେ, ଏବେ ସମୟେ ସମୟେ ପିଲାଖେଳ ଖେଳୁଛନ୍ତି ।" ସୁରମାଷ୍ଟ୍ରେ କଥାଟାକୁ ମିଶେଇଦେବା ଉଦ୍ଦେଶ୍ୟରେ କହିଲେ, "ଧ୍ରୁବର କଥା ଶେଷକରି ଦେଇଛନ୍ତି କି ଆଜି ? ମତେ ପ୍ରଥମ ଅଙ୍କଟା ଦେଇଥିଲେ; ସେଥିରେ ସୁନୀତିର ସ୍ତବ ଗୀତି ଥିଲା, ମୁଁ ସେ କଣ୍ଡାଟି ଲେଖି-ରଖିଥିଲି । ବାଦ୍ୟକାରେ ଶୁଣିଲ ନା ! ଏକ୍ଷଣି ତୁମକୁ କହୁଥିଲି, 'ସାଗର ତୀରରେ' ନାଟକର କବିତା ବୋଲି । ମନେପଡ଼ୁ ନାହିଁ କି ଆଜି, ଲମ୍ବା କବିତା ଗୋଟିଏ ସନ୍ଧ୍ୟା ଉପାସନା ସମୟରେ ସୁନୀତି ପଢ଼ିଛି ।"

ସ୍ୱର୍ଣ୍ଣ ଉତ୍ସାହିତ ହୋଇ କହିଲା, "ସେ କବିତାଟାରେ ତ ଅନେକ ଭୁଲ ଥିଲା । ତାକୁ ମୁଁ ନୂଆକରି [illegible] ଲେଖିଛି । ଆପଣ ଦୟାକରି ଗୀତ କରି ଗାଇ ପାରନ୍ତେ—"

ବାଦ୍ୟକାର କହିଲେ, "ହଁ ହେ ମାଷ୍ଟ୍ରେ ! ଏଥର ନାଟକୀୟ ଲୋକଙ୍କୁ ଧରି ମନକୁ ଉତ୍ସାହ ଯିମିତି ମରି-ଯାଇଛି । ନୂଆ ଗୀତ ଶୁଣାହୋଇନାହିଁ । ଗୀତଟା

ପରିଶୋଧ ନ କରି ଯଦି ମରିଯାଏ, ଶୁକ ବଡ଼ ଅସୁବିଧା ବୋଧକରିବ । ସେ ପୁଣି କଥା ଆରମ୍ଭ କରି କହିଲା, ସାହୁଙ୍କ ଦୋକାନ ବାକିଟା ଆଗ ଶୁଝିଦେବା ବଣ୍ଟୁ! ଦେଖୁଛୁ ମୁଁ କ୍ଷୀଣ ହେଲିଣି, ଔଷଧ-ପଥ୍ୟ ପାଇଁ ପଇସା ଆବଶ୍ୟକ । ଏ ସମୟରେ ସୁନାଗହଣା ଆଉ କଅଣ ହେବ ? ମୋର ଏଇ ଦୁଇଟା ହାର ଅଛି । ଏଥିରୁ ଗୋଟିଏ ନେଇ ବନ୍ଧୀକରି ଦେ, ସବୁ ବାକି ଶୁଝା ହୋଇଯିବ । ଏଣିକି ଯାହା ଆଣିବୁ, ପଇସାଦେଇ ଆଣିବୁ । ଏ ବର୍ଷର ଧାନ ଆସିଲେ ବନ୍ଧୀକର ହାର ଗୋଟାଏ କରିଦେବା ।

ବଣ୍ଟୁ ସ୍ୱର୍ଣ୍ଣମୁହଁରୁ ସାଂସାରିକ କଥା ଶୁଣି ଆହ୍ଲାଦିତ ହୋଇଉଠି କହିଲା, ସୁନା ଟିକିଏ ନ କଲେ କିମିତି ହେବ ? ଶୁକବାବୁ ଏଥର ବଡ଼ ହେବେ । ଏତେ ବଡ଼ ରୋଗପୀଡ଼ାରେ ପୀଡ଼ିତା ହୋଇ ମଧ୍ୟ ସ୍ୱର୍ଣ୍ଣ ବଣ୍ଟୁର କଥା ଶୁଣି ହସିଦେଲା ଫିଁ କରି । ସ୍ୱର୍ଣ୍ଣର ହସିଲା ମୁହଁକୁ ଚାହିଁ, ପୁଣି ସେ ସଂସାର ଆଡ଼କୁ ଆକୃଷ୍ଟ ହେବା ଦେଖି ବଣ୍ଟୁ ଏତେଦୂର ଉଜ୍ଜ୍ୱଳ ହୋଇ ଉଠିଥିଲା ଯେ ଶେଷସମ୍ବଳ ଭୂଷଣଟିକ ବନ୍ଧୀ କରିବା କଥାରେ କୌଣସି ପ୍ରକାର ଆପତ୍ତି କରି ନ ଥିଲା । ସ୍ୱର୍ଣ୍ଣ ତା' ଗଳାରୁ ଦୁଇ ସୋଣିଆ ଚନ୍ଦ୍ରହାରଟି ଖୋଲିନେଇ ବଢ଼ାଇଦେଲା ବଣ୍ଟୁ ପାଖକୁ । ହଁ, ଉଠ୍ ବଣ୍ଟୁ ! ଆଉ ଡେରିକଲେ ଚଳିବନାହିଁ । ଏଇଟା ହେଉଛି ତୋର ଶେଷ କାର୍ଯ୍ୟ । ଶୀଘ୍ର ଆସିବୁ । ବାବୁ ଏଣୁଣି ଆସିଯିବେ ।

ସେ ଦିନ ରାତିରେ ଜ୍ୱରର ତାପଟା ଅତ୍ୟନ୍ତ କଷ୍ଟଦାୟକ ହୋଇ ବଢ଼ି ଯାଇଥିଲା । ବୈଦ୍ୟଭୂଷଣ ଆସି ଚତୁର୍ଦ୍ଦଶାଙ୍ଗ ପାଚନ ସହିତ ବଟିକା ବ୍ୟବସ୍ଥା କରିଯାଇଥିଲେ । ତାହାହେଲେ ମଧ୍ୟ କାଶର ପ୍ରକୋପ ପୁଣି ଶ୍ୱାସନଳୀରେ କଷ୍ଟବୋଧ ହେଉଥିବା ଅନୁମାନ ହେଉଥିଲା । ପରମାନନ୍ଦ ସ୍ୱର୍ଣ୍ଣର ପାଖକୁ ବସି ପିଠିରେ ହାତ ବୁଲେଇ ଆଣି ପଚାରିଲେ, ତୁମକୁ କଅଣ ଲାଗୁଛି କିଛି ତ କହୁନାହଁ ? ସ୍ୱର୍ଣ୍ଣ ଆଖି ଖୋଲି ଅନାଇଲା । ପରମାନନ୍ଦ ଝୁଙ୍କି ପଡ଼ିଲେ ତା ମୁହଁ ଉପରକୁ । ସେ ନିଜକୁ ନିଜେ ବୁଝିପାରୁଥିଲେ ଯେ ଏ ଜ୍ୱରଟା ତାକୁ ଦୁର୍ବଳ କରିଦେଲାଣି । ଏଣିକି ବାରପାଖକୁ ଯିବା ମଧ୍ୟ ତା ପକ୍ଷରେ ସମ୍ଭବ ହେବନାହିଁ । ଥରକୁ ଥର କାଶର ଆକ୍ରମଣ, ମଥାର ଦାରୁଣ ବେଦନା । ସେଇ ପୀଡ଼ାର ଅନୁଭୂତ ଭିତରେ ମନେପଡ଼ିଯାଉଛି ଆପଣା ଜୀବନର ଇତିହାସ । ଥରେ ଥରେ କେଉଁ ଦୂରପ୍ରାନ୍ତରୁ ଶୁଭିଯାଉଛି ସ୍ୱରମାନଙ୍କ କଣ୍ଠସ୍ୱର । ବାଦ୍ୟକାରଙ୍କ ବାତ୍ସଲ୍ୟ-ମମତାଭରା କଥା । ପରସ୍ପରର ସ୍ନେହ ପ୍ରୀତିର ଅନୁଭବମୟ ଅନୁଭୂତି, ନାଟକର ଦୃଶ୍ୟ ପରି ଗୋଟି ଗୋଟି ହୋଇ ଦିଶିଯାଉଛି ତାର ଜ୍ୱରପୀଡ଼ିତ ଆଖି ଆଗରେ । କି ଆଶ୍ଚର୍ଯ୍ୟ ଘଟଣା ହେଲା, ଆଜି ସେ ଆଳାପ ଆଲୋଚନାର କୌଣସି ମୂଲ୍ୟ ନାହିଁ । ଆପଣା ହାତର ସୃଷ୍ଟି ନାଟକ- ଜଗତ କେଉଁଆଡେ ମିଳେଇ ଯାଇଛି ଶୂନ୍ୟମାର୍ଗରେ । ସେ ଯେ ସଂସାରର ଜଣେ ସାଧାରଣ ସ୍ତ୍ରୀ ବ୍ୟକ୍ତି । ତାହାହେଲେ ମଧ୍ୟ ସେଇ ଶିଶୁକାଳରୁ ସେ ଯେ ଆପଣାକୁ ସ୍ୱତନ୍ତ୍ର କରି ଦେଖି ଆସିଛି ଅନ୍ୟ ସମସ୍ତଙ୍କଠାରୁ ! ଶାଶୁ-ଶ୍ୱଶୁର, ସ୍ୱାମୀ-ପୁତ୍ର ସମସ୍ତେ ତାର ଅତି ପ୍ରିୟ । ସ୍ୱାମୀଙ୍କୁ ସେ ସେବା କରିଛି ଗଭୀର ଭକ୍ତିରେ । ଯାହା ଭାବୁଥିଲା, ସେଇ କଥା ହିଁ ସ୍ୱପ୍ନାବିଷ୍ଟ ହୋଇ କହିଗଲା ଅସ୍ପଷ୍ଟ କରି । ପରମାନନ୍ଦ ବ୍ୟାକୁଳ ହୋଇଉଠିଲେ ସ୍ୱର୍ଣ୍ଣର ପ୍ରଳାପ ଶୁଣି ।

ରାତି ଗୋଟାକଯାକ ସେଇ ଅବସ୍ଥାରେ କଟିଗଲା ସ୍ୱର୍ଣ୍ଣର । ଭୋରହେବାକୁ ଜ୍ୱରଟା କମିଆସିଲା । ସ୍ୱର୍ଣ୍ଣ ଆଖି ଖୋଲି ଚାହିଁଲା ମାଘ ଶେଷର ସ୍ନିଗ୍ଧ ସୂର୍ଯ୍ୟରଶ୍ମି ଆସିଲାଣି ବୋଧହୁଏ । ମନ୍ଦିରର ଘଣ୍ଟା-ବାଜିଲାଣି । କେତେଟା ବାଜିଲା ଆଜି ? କେଜାଣି କାଲି ସକାଳକୁ ଏଇ ଚେତନା ଆନନ୍ଦମୟ ଶଙ୍ଖଧ୍ୱନିଟି ଆଉ ଶୁଣିପାରିବ କି ନାହିଁ ! ଦୁଇ ଦିନ ହେଲା ସ୍ୱର୍ଣ୍ଣର ଖଟ ଅଣ୍ଡିକ ନେଇ ଯାଇଥିଲେ ପରମାନନ୍ଦଙ୍କ ଶୋଇବା ପଲଙ୍କ । ଅନିଦ୍ରା କ୍ଲାନ୍ତିରେ ଭୋରବେଳକୁ ନିଦ ଲାଗିଆସିଥିଲା ପରମାନନ୍ଦଙ୍କୁ । ବଣ୍ଟୁ ଚମ୍‌ପେଇଁରେ ଔଷଧ କରି ଧରି ଆସିଲା । ବଣ୍ଟୁକୁ ସ୍ୱର୍ଣ୍ଣ କଅଣ କହୁଥିଲା । ପରମାନନ୍ଦ ଧଡ଼ପଡ଼ ହୋଇ ଉଠିପଡ଼ି ମୁହଁ ଧୋଇ ବୁଲିଆସିଲେ

ବାଡ଼ପାଖରୁ । ଦୁ’ କରି ଆଣିବାକୁ କହିଦେଲେ ବଣୁକୁ । ସେଇ ଘରର କୋଣକୁ ପାଉଁଶ ଗଣ୍ଡିଏ ରଖା ହୋଇଥିଲା, ମଳମୂତ୍ର ସବୁ ସେଇଠି । ବଣୁ ନିର୍ବିକାର ମନରେ ପରିଷ୍କାର କରିଯାଉଥିଲା ସବୁ ।

ପରମାନନ୍ଦ ସ୍ୱର୍ଣ୍ଣର ମୁହଁ ଧୋଇ ପୋଛିଦେଲେ । ପୁଣି ସେ ଲେଟିଗଲା ବାରଣ୍ଡାରେ । ଗରମ ଦୁ’ ଗ୍ଲାସ ଚୁମୁକ ପିଆଇଦେଲେ ସେ ଚୁମୁକ ଚୁମୁକ କରି । ମୁହଁ ପାଖକୁ ମୁହଁରଖି ପଚାରିଲେ—କଅଣ, ଟିକିଏ ଭଲ ଲାଗୁଛି କି ଶୁକବୋଉ ? ନା, ହଁ, ଭଲ ଲାଗୁଛି । ମୁଣ୍ଡଟା କେମିତି ଖାଲିଗଲାପରି ଲାଗୁଛି । କଅଣ ଗୋଟାଏ ପଚାରିବି ପଚାରିବି ବୋଲି ପୁଣି ଭୁଲିଯାଉଛି । ହୁଏ ତ ଆଉ ପଚାରି ପାରିବନାହିଁ । ପରମାନନ୍ଦ ନିରେଖି ଦେଖିଲେ, ସ୍ୱର୍ଣ୍ଣର ମୁହଁରେ ଦିଶୁଛି ରକ୍ତଶୂନ୍ୟତାର ରୂପ । ଆଖି ଦୁଇଟା କୋଟରଗତ ନ ହୋଇ ମୁହଁ ଉପରେ ଭାସିଉଠୁଛି । ଛାତିଟା ତାଙ୍କର ହୁଁ କରି ବୋବାଇ ଉଠିଲା । ସେ ବଡ଼ ଆବେଗରେ ସ୍ନେହମୟୀ ପତ୍ନୀର ଲଲାଟରେ ଚୁମ୍ବନରେଖାଟିଏ ଆଙ୍କିଦେଇ କହିଲେ, ସେ କଥା ଆଉ ଭାବନାହିଁ । ଯାହାହେବା କଥା ହୋଇଗଲାଣି । କେବେ ଭାବି ନ ଥିବା କଥା କେତେ ବଡ଼ ଘଟଣାର ରୂପ ଧରି ପ୍ରକାଶ ପାଇଗଲା ଦେଖୁ ଦେଖୁ । ସୁରଦାସେ ଆଉ ବାର୍ଦ୍ଧକ୍ୟରେ ହାତର ଟଙ୍କା ଖରଚ କରି ତୁମର ନାଟକ ନିମନ୍ତେ ଯାହା କରିଛନ୍ତି, ସେ ଋଣ କେବେ ପରିଶୋଧ କରାଯାଇ ପାରିବନାହିଁ । ତୁମ ପାଖକୁ ଆସିବା ପାଇଁ ବାର୍ଦ୍ଧକ୍ୟର ବୁଢ଼ା ବଡ଼ ଅଳିକରି ବସିଥିଲେ, ସୁରମାଷ୍ଟ୍ରେ ତାଙ୍କୁ ମନାକରି ବୁଝେଇ କରି ନେଇଗଲେ ସାଥିରେ । ତୁମର ଦେହ ଆଉ ମନର ଯେଉଁ ଅବସ୍ଥା, ଏଥିରେ ଆବେଗ ଇତ୍ୟାଦି ସହ୍ୟ ହେବନାହିଁ ବୋଲି ସେ ଜାଣନ୍ତି । ଅଣେଇଁ ହୋଇ ଶୋଇ ହାତର ଚୂଡ଼ି ଗଣୁଥିଲା ସ୍ୱର୍ଣ୍ଣ । ପରମାନନ୍ଦ ସ୍ୱର୍ଣ୍ଣର ପିଠି ଥାପି ଦେଇ କେଉଁ କହିଲେ ପୁଣି, ତୁମେ ଜ୍ୱର ଧରି ଶୋଇଲ, ସେ ଦିନେଁ ଏ ସମସ୍ତଟା ଦିନରାତି ଲାଗିଥିଲେ ନାଟକଘର କାର୍ଯ୍ୟରେ । ଧାଁ-ଦଉଡ଼ କରି ସବୁ ଧାରଉଧାର ପରିଶୋଧ କରି ଦେଇଛନ୍ତି । ସିନେମା ତ ବନ୍ଦ କଲେ, ତା’ ଛଡ଼ା ନାଟକଘରର ଟିଣ ଛପର, କାଠ-ବାଉଁଶ, ଇଟାମାଟି ଯାହା ଯେଉଁଠି ଥିଲା, ସବୁ ବିକ୍ରୀକରି ଦେଇଛନ୍ତି । କେଉଁଠି ଋଣ ଉଧାର ପଇସାଟିଏ ମଧ୍ୟ ବାକି ରଖିନାହାନ୍ତି । ବଣୁକୁ ଦେଖାଦେଲେ ଛାଡ଼ିବ ନାହିଁ ବୋଲି ତାକୁ ମଧ୍ୟ ନ କହି ଗଲେ ବାହାରି । ବାର୍ଦ୍ଧକ୍ୟର ତାଙ୍କର ଘର ଖଣ୍ଡିକ ବନ୍ଧକ ଦେଇ ବାଟଖରଚ ପାଇଁ ହେଡ଼ଶହ ନେଇଛନ୍ତି । ଯିବା ସମୟରେ ସେ ଅବସ୍ଥା କହିହେଉନାହିଁ । ମାଷ୍ଟ୍ରଙ୍କ ଆଖିରୁ ଲୁହ ବହିଯାଉଥାଏ । ବାର୍ଦ୍ଧକ୍ୟର ତ କଥା କହିପାରିଲେ ନାହିଁ । ସ୍ୱର୍ଣ୍ଣ ଆଖିରେ ସଞ୍ଚରିଗଲା ଉଷ୍ଣ ଅଶ୍ରୁ । ଜ୍ୱରପୀଡ଼ିତର ସମଗ୍ର ହୃଦୟ ହୋଇଉଠିଲା ବିଚ୍ଛେଦବ୍ୟଥିତ । ସେ କଡ଼ ଲେଉଟେଇ ଶୋଇଲା ସେ ପାଖକୁ ମୁହଁକରି । ଶୁକ ଆଜି କମ୍ପା! କାଲି ସକାଳୁ ଆସିବ । ଶୁଣୁଛ ! କହିଲେ ପରମାନନ୍ଦ । ଆଖି ପୋଛିଦେଇ ସ୍ୱର୍ଣ୍ଣ କହିଲା, ଶୁକ ଆସିବ ? ତୁମର ମୁହଁକୁ ଅନେଇ ମରିଯିବି । ଏ ସମୟରେ ମୃତ୍ୟୁଟା ବଡ଼ ସୁନ୍ଦର ହୁଅନ୍ତା । କେବଳ ତୁମର ଦୁଃଖ ହେବ ବୋଲି ଚିନ୍ତାକରୁଛି । ତା’ ନ ହେଲେ, ଭାବିଲେ ଆନନ୍ଦର ସୀମା ରହୁ ନାହିଁ । ଏଇ ସାମାନ୍ୟ ଅସୁସ୍ଥତାରେ ତୁମ ମୁହଁକୁ ଚାହିଁ ଚାହିଁ ସୁନାର ରଥରେ ବସି ଚାଲିଯିବି । ମୋର ସଂଯୋଗ-ଦୁଃଖରେ ଶୁକ କାନ୍ଦି ଉଠିବ ଆବେଗରେ । ମନୁଷ୍ୟ ଜନ୍ମହେବା ମାତ୍ରେ ହିଁ ଯେ ମୃତ୍ୟୁ ଭୟ ଆସୁଛି । ତୁମକୁ ଦେଖି ଦେଖି ମରିବା କଅଣ ମୋର ସୌଭାଗ୍ୟ ନୁହେଁ ? ଶୁକ ତୁମକୁ ସାନ୍ତ୍ୱନା ଦେବ । ସେ କଥା ଯେ ଏବଠୁ ଶୁଭିଲାଣି । ପରମାନନ୍ଦ ଆବେଗରେ କୁଣ୍ଢାଇ ଧରି କହିଲେ, ଏମିତି ନିଷ୍ଠୁର କଥା ତୁମେ ମତେ କହିପାରିଲ ଶୁକବୋଉ ? ତୁମକୁ କ୍ଷଣେ ନ ଦେଖିଲେ ଏ ପିଣ୍ଡରେ ପ୍ରାଣ ରହିବନାହିଁ ।

ସ୍ୱର୍ଣ୍ଣ ତାର ଶୀର୍ଣ୍ଣ ଦୁର୍ବଳ ବାହୁ ଉଠେଇ ରଖିଦେଲା ସ୍ୱାମୀଙ୍କ ପିଠିରେ । ହାତଟି ପୁଣି ଖସିପଡ଼ିଲା ଶିଥିଳ ହୋଇ । ଜଡ଼ିତକଣ୍ଠରେ କହିଲା, ଛି, ଇମିତି କାନ୍ଦନ୍ତି ! ବସିଲ ସ୍ଥିର ହୋଇ । କେମିତି ଶୀତ ଲାଗୁଛି ।

କମ୍ପନଟା ସେତେଇ ଦିଅ । ପରମାନନ୍ଦ ଆତଙ୍କିତ ହୋଇଉଠି କହିଲେ, ଆଜି ପରେ ଜ୍ୱର ଆସିଗଲା । କୌଣସି ଔଷଧକୁ ତ ଏ ଜ୍ୱରଟା ମାନିଲାନାହିଁ । ମନରେ ଗୋଟାଏ ଭୟ ସଞ୍ଚାର ହୋଇଗଲା ତାଙ୍କର । ସେ ଭାବିଲେ, ସ୍ୱର୍ଣ୍ଣ ଆଉ ଭଲ ହେବନାହିଁ । ଜ୍ୱର ଆସି ତାର ସବୁ ଶକ୍ତି ନିଃଶେଷ କରିଦେଲାଣି । କଅଣ ଆଉ କରିବେ ସେ । ନାଡ଼ି ଦେଖିଲେ, ଜ୍ୱରଘୋର ଲକ୍ଷଣ ଦେଖାଯାଉଛି । ପାଦ ଦୁଇଟା ଲୁଆପଥର ପରି ଶୀତଳ ହୋଇଗଲାଣି । ଶୀତର ପ୍ରକୋପ ବଢ଼ିଯାଉଛି ବେଳକୁ ବେଳ ।

ବସୁ ଧାଇଁଆସିଲା ପରମାନନ୍ଦଙ୍କ ଡାକ ଶୁଣି । କଅଁଳ ଛନ୍ଦେଇଟା ଧରି ବସିପଡ଼ିଲା ସେ ପାଦ ପାଖକୁ । ସାହସ କରି କହି ଯାଉଥିଲା ସେ । ସେକ ଦେଲେ ଏଇକ୍ଷଣିକା ପାଦ ଗରମ ହୋଇଯିବ । କୋଉଥି କ ମାନିଲା ନାହିଁ ସ୍ୱର୍ଣ୍ଣର ଜ୍ୱର । ଦୁଇପହରର ବେଳକୁ କଅଣ ଗୁଡ଼ାଏ କହିଗଲା ସେ । ସନ୍ଧ୍ୟାପୂର୍ବରୁ ଭୁଲି ଆଉ ଟିକିଏ ଜୋର ବଢ଼ିଗଲା ତାର । ସେ କୁଅଣ ଗୋଟାଏ କହିବାକୁ ଯାଇ ଡାକିଲା, ଶୁଣୁଛ ଶୁକବାପା ! ଅଦ୍ୟ ଘେଣ୍ଟୁଘ୍ର ବାଜୁଛି ଦାଣ୍ଡରେ, ଧୁଙ୍କୁଡ଼ୁ ଧୁଙ୍କୁଡ଼ୁ ଶୁଭୁଛି । ଦେହଟା ଶୀତେଇ ଉଠୁଛି । ଉଃ ! ଭୟ ତ କେବେ କରି ନ ଥିଲି ।

ଶୀତ ବଢ଼ିବା ସଙ୍ଗେ ସଙ୍ଗେ ସ୍ୱର୍ଣ୍ଣର ପ୍ରଳାପ ମଧ୍ୟ ବଢ଼ି ଚାଲିଥିଲା । ସେ ଶୁକକୁ ବୁଝେଇ କହୁଛି । ଆଉ ଗୋଟିଏ କି ଦୁଇଟି ପୃଷ୍ଠା ହେବ । 'ପ୍ରତ୍ୟାବର୍ତ୍ତନ'ଟି ଶେଷ କରିଦେବି । ପାରିବି ନାହିଁ ? ସୁରମାପ୍ରେ କହି-ଥିଲେ ଶେଷଟା ଚମତ୍କାରପ୍ରଦ କରିବାକୁ । ତୁମେ ଏଠିକି ଆସିବଟି । ଶୁଣ, କଅଣ ଶୁଭୁଛି ? ହରିବୋଲ ଧ୍ୱନି ଶୁଭୁଛି, ଘେଣ୍ଟୁଘ୍ର ବାଜୁଛି ଧୁଙ୍କୁଡ଼ୁ ଧୁଙ୍କୁଡ଼ୁ । ଶାଶୁଙ୍କ ବିମାନ ପଛରେ ଉଡ଼ିଯାଉଛି ମୋର ବିମାନ । ହଂସ ଉଡ଼ିଲା ପରି ଉଡ଼ିଯାଉଛି ଦେହଟା । ଧରିଲ··· ଧରିଲ !

ପରମାନନ୍ଦ ସ୍ୱର୍ଣ୍ଣର ଛାତି ଉପରେ ମଥାରଖି କାନ୍ଦି ଉଠିଲେ ଶୋକାର୍ତ୍ତ ହୋଇ । କାନ୍ଦିକି ଉଠିଲେ ସ୍ୱର୍ଣ୍ଣର ଶୁଣ । ସ୍ୱର୍ଣ୍ଣ ପରମାନନ୍ଦଙ୍କ ମଥାଟିକୁ ଛାତି ଉପରେ ଚାପି ରଖି କହିଲା, କାନ୍ଦ ନାହିଁ ଗୋ କାନ୍ଦ ନାହିଁ । ମୋର ଭୟ ହେଉଥିଲା, ମୋ ଆଗରୁ ତୁମେ ମୋତେ ଛାଡ଼ିଦେବ—ପରମାନନ୍ଦ କହିଉଠିଲେ, ତୁମେ ସତରେ ଏକାନ୍ତ ଏକା କରି ଚାଲିଯିବ ? ମତେ ପକେଇଦେଇ ପଳେଇଯିବ ? ମୁଁ କିମିତି ବଞ୍ଚିବି ? ମୁଁ ତୁମକୁ ନ ଦେଖି ବଞ୍ଚିବ ନାହିଁ ଶୁକବାପା ! ! ଶୁଣିଲ, ଶୀତ ଶୁଭୁଛି । ବଂଶୀ ବାଜିଲା ପରି ଲାଗୁଛି । ଧୁନିଟା ଦୂରରେ ! ଏଇ ତ ପାଖରେ ଶୁଭିଲାଣି । ଶୁଣୁଛ ! ଆଜି ଗୋଟାଏ କଥା, ମୁଁ କହୁଟାର ନାଁ 'ପ୍ରତ୍ୟାବର୍ତ୍ତନ' ଦେଇଛି । ଶୁକ ଲେଖିଥିଲା ଏଇ ନାମଟି ରଖିବାକୁ । ଆସିଲ ବୋଧହୁଏ ଦେଖିଲ । ଶୁକ ! ଆସିଲୁ ! ଭାରେ ବେଗରେ ବାକ୍‌ରୋଧ ହୋଇଗଲା ସ୍ୱର୍ଣ୍ଣର ।

ଶାନ୍ତିରେ ଆଖି ମୁଦି ହୋଇଗଲା । ଝାଳବୁନ୍ଦାଏ ବହିଯାଉଛି ଗଣ୍ଡ-କପାଳରୁ ।

ବସୁ ସେକ ଦେଉଥିଲା ସ୍ୱର୍ଣ୍ଣର ପାଦ ଦୁଇଟାକୁ । କଅଁଳିଆ ପାଦ ଦୁଇଟି କାଠ ପରି ଲାଗୁଛି ବେଳକୁ-ବେଳ । ଏବେ ସେକରେ ଉଷୁମ ତ ହେଉନାହିଁ ! କୋଉଁଠି ପାଖରୁ ଘଡ଼ ଘଡ଼ ଶବ୍ଦ ଶୁଭୁଛି ।

ରାତିର ଶେଷ ହେଲାଣି । ଘଡ଼ିଟା ରଖାହୋଇଛି ଯିମିତି ସେଇ ଝରକା ଉପରେ । ଶବ୍ଦ ହେଉନାହିଁ ସେଇ ଘଡ଼ିଟା । କାନ ଡେରି ଶୁଣିଲା ବସୁ । ଏପାଖ ସେପାଖ ପଡ଼ୋଶୀଘର ସମସ୍ତେ ଶୋଇପଡ଼ିଲେଣି । ମନ ଭିତରେ ସୃଷ୍ଟିହେଉଛି ଦାରୁଣ ଆତଙ୍କ । ପରମାନନ୍ଦ ତଳେ ବସିଛନ୍ତି । ଦୁଇଟାଯାକ ହାତ ଖଟ ଉପରକୁ ଛାଡ଼ିକ ଛାତି ରଖି ମଥାଟି ଥାପିଦେଇଛନ୍ତି ଖଟ ଉପରେ । ବସୁ ପଥର ପରି ବସି ଦେଖୁଥିଲା ସ୍ୱର୍ଣ୍ଣର ଦେହଟାକୁ । ପରମାନନ୍ଦଙ୍କ ଆଡ଼କୁ ଅନେଇଲା ସେ । ଆହା, କଅଣ କରିବେ ? କିମିତି ଧରିବ ଧୈର୍ଯ୍ୟ ଏ ଦୁଃଖ ସମ୍ଭାଳିବେ ? ଦି' ଦିନ ତଳେ ପରମାନନ୍ଦଙ୍କ ସୁଖ ସପନଟିଏ ଭଳି ଉଠାଇ ନେଲା ଭାଗ୍ୟରେ ଦେଖାଇଥାଆନ୍ତା । ଏତେ ସୁକୁମାର ମଣିଷକୁ ଏତେ ବଡ଼ ଦଣ୍ଡ ! ସତରେ ଦୁଃଖ ହେବ ବୋଲି ଏତେ ବଡ଼ ଦୁଃଖ-ବାଧାର କଥା

କେବେ ତ ମାଆ ମୋର ପଦେ କହି ନ ଥିଲେ । ଆଜ ଦୁଃଖ ଦେଇ ଚାଲିଯିବେ ? ବିଶୁର ଆଖିରେ ଭରି ହୋଇଗଲା ତାତିଲା ଲୁହ ।

ପାହାନ୍ତି ପହର ହେଲାଣି । ବୈଦ୍ୟଭୂଷଣ ଆସି ଶୋଇଥିଲେ ଦାଣ୍ଡଘରେ । ଆଜି କଅଣ କରାହେବ, ବୈଦ୍ୟଙ୍କୁ ପଚାରିଦେଇ ଆସି ସେକିବାରେ ଲାଗିଥିଲା ବିଶୁ ।

ଦାଣ୍ଡଦୁଆର ପାଖରେ ବଳଦ ଶଗଡ଼-ରଖିବା ଶବ୍ଦ ଶୁଭିଲା ବିଶୁକୁ । ଶଗଡ଼ଚାଳକ ହ' ବା ହ' କରି ରୋକି ରଖିଲା ବଳଦହଳକୁ । ବିଶୁ ଚମକିଉଠି ଅନେଇଲା । ଉଠିବାକୁ ଇଚ୍ଛା ହେଉନାହିଁ । ଆସ୍ତେ ଆସ୍ତେ ଚାଲିଗଲା ସେ ଅଗଣାକୁ । ଶୁକର ସ୍ୱର ଶୁଭୁଛି ଦୁଆର ମୁହଁରୁ । ଧାଇଁଯାଇଁ, ଦେଖିଲା ଶୁକ ଶଗଡ଼ଭଡ଼ା ଦେଇସାରି ଆସୁଛି ଦାଣ୍ଡଘରକୁ । କାନ୍ଦିଉଠିଲା ବିଶୁ ଶୁକକୁ ଦେଖି ।

ଶୁକ ଦ୍ରୁତପଦରେ ଯାଇ ଡାକିଲା, ବୋଉ, ! ଏ ବୋଉ ମୋ ବୋଉ ! ଡାକ ଡାକ ବସିପଡ଼ିଲା ସେ ସ୍ମୃତିର ମଥା ପାଖକୁ । ପରମାନନ୍ଦ ବିହ୍ୱଳହୋଇ ଚିତ୍କାର କରିଉଠିଲେ ଶୁକକୁ ଆଲିଙ୍ଗନ ପାଶରେ ଆବଦ୍ଧକରି । ଆଖି ଖୋଲି ଅନେଇଲା ସ୍ମୃତି ନିମିଷକ ପାଇଁ । ଫେରିଆସିଲା ଶାନ୍ତ, ସହଜ ଚେତନା । ସେ ହାତ ବଢ଼େଇଲା ଶୁକର ମଥା ଆଡ଼କୁ । କଣ୍ଠ ପାଖରେ କଥା ତାର ଅଟକିଗଲା ପୁଣି । ଜଡ଼ିତସ୍ୱରରେ କହିଲା ସେ, 'ପ୍ରତ୍ୟାବର୍ତ୍ତନ' ହୋଇ ଯାଇଛି । କେବଳ-ଏତିକ-ବାକି ଅଛି—ସେ ତା' ପୁଅକୁ ଦେଖି ମରିଯିବ । ଶୁକ ଚିତ୍କାର କରି କହିଲା, ବୋଉ, ତୁମେ କେବେ ମରିବନାହିଁ । ତୁମର ଚିନ୍ତାଧାରା ବହିଯିବ ହୃଦୟରୁ ହୃଦୟକୁ । ପ୍ରତି ନିମିଷରେ ତୁମର ପ୍ରତ୍ୟାବର୍ତ୍ତନ ଘଟୁଥିବ ମାନବ ଜଗତ ଭିତରେ । ସ୍ମୃତିର ଓଷ୍ଠକୋଣରେ ମୃଦୁହାସ୍ୟର କ୍ଷୀଣରେଖା ଦେଖାଦେଇ ମିଳେଇଗଲା ସେହିକ୍ଷଣି । ସେ ପରମାନନ୍ଦଙ୍କୁ ଦେଖେଇ ଦେଇ କଅଣ କହିଲା; କିନ୍ତୁ ବୁଝିହେଲାନାହିଁ । ସର୍ବାଙ୍ଗ ଅବଶ ହୋଇ ଆସିଲା ଧୀରେ ଧୀରେ । ଶୁକଆଡ଼ୁ ଦୃଷ୍ଟି ଫେରାଇ ନେଇ ପରମାନନ୍ଦଙ୍କ ଆଡ଼କୁ ଚାହିଁଥିଲା ସେ । ଶ୍ୱାସଶବ୍ଦଟା ବନ୍ଦ ହୋଇଗଲା ହଠାତ୍ । ତକିଆ ଉପରୁ ସ୍ମୃତିର ମୃତ୍ୟୁଯନ୍ତ୍ରଣାକାତର ଦେହଟା ତଳକୁ ତଳକୁ ଖସିଗଲା ଦେଖୁ ଦେଖୁ ।

ଏତିକିବେଳେ ବିଶୁ କଡ଼ ଗୋଟାଏ ବିକଳ ରଡ଼ି କରି କହିଲା —ଶୁକବାବା, ଧରିପକାଅ ! ଧରିପକାଅ !! ବାପୁ ତଳେ ପଡ଼ିଲେ !

ଶୁକ ନତ ହୋଇପଡ଼ି ଉଠେଇନେଲା ପରମାନନ୍ଦଙ୍କର ପ୍ରାଣଶୂନ୍ୟ ଦେହଟାକୁ ।

